ନବୀନ କୁମାର ପରିଡ଼ାଙ୍କ

# ବିଦ୍ୟାଳୟ ନାଟ୍ୟଶିକ୍ଷା ଓ ନାଟ୍ୟତ୍ରୟୀ







ଜୟଗୁରୁ

ବିଦ୍ୟାଳୟ

# ନାଟ୍ୟଶିକ୍ଷା

# ଓ

# ନାଟ୍ୟତ୍ରୟୀ


ନବୀନ କୁମାର ପରିଡା

ପ୍ରାକ୍ତନ ଅଧ୍ୟକ୍ଷ ଉତ୍କଳ ସଂଗୀତ ମହାବିଦ୍ୟାଳୟ

ଭୁବନେଶ୍ୱର

# ବିଦ୍ୟାଳୟ
# ନାଟ୍ୟଶିକ୍ଷା ଓ ନାଟ୍ୟତ୍ରୟୀ


ଲେଖକ : ନବୀନ କୁମାର ପରିଡା

ପ୍ରଥମ ସଂସ୍କରଣ : ୧୦୦୦

ପ୍ରଥମ ପ୍ରକାଶନ : ବିଜୟା ଦଶମୀ-୨୦୧୨

ପ୍ରକାଶକ : **ଅନ୍ନପୂର୍ଣ୍ଣା ପରିଡା**
ଜିତ୍ ପ୍ରକାଶନ, ବି-୬/୧୦, ଇନ୍ଦିରା ହାଉସିଂ କଲୋନି
ପୋ : ଶିଶୁପାଳଗଡ଼, ଭୁବନେଶ୍ୱର-୭୫୧୦୦୨

ମୁଦ୍ରଣ:
ଗ୍ରାଫିକ୍, ବାପୁଜୀ ନଗର, ଭୁବନେଶ୍ୱର

ମୂଲ୍ୟ : ୮୦(ଅଶୀ)ଟଙ୍କା ମାତ୍ର


**Vidyalaya**
**NATYA SHIKSHYA O NATYATRAYA**


Writer : **Nabin Kumar Parida**

First Edition - 1000

First Published - Bijaya Dasami-2012

Publisher - **Annapurna Parida**
Jit Prakasana, B-6/10, Indira Housing Colony,
Po- Sisupalagarh, Bhubaneswar-751002

Printed by:
GRAPHIC, Bapuji Nagar, BBSR

Price :
Rs. 80/-(Eighty) only

# ସୂଚୀପତ୍ର


| | ବିଷୟ | ପୃଷ୍ଠା |
|---|---|---|
| ୧. | ବିଦ୍ୟାଳୟ ପରିବେଶରେ ନାଟକ ଶିକ୍ଷା | ୧ |
| ୨. | ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ନାଟକ ରଚନା ଓ ପ୍ରଯୋଜନା | ୨ |
| ୩. | ନାଟକ, ନାଟ୍ୟମଞ୍ଚ ଓ ଅଭିନୟ | ୪ |
| | କ) ନାଟକ ଓ ନାଟ୍ୟ ତତ୍ତ୍ୱ | ୪ |
| | ଖ) ଆବଦ୍ଧ ନାଟ୍ୟମଞ୍ଚ | ୭ |
| | ଗ) ମୁକ୍ତାକାଶ ନାଟ୍ୟମଞ୍ଚ | ୧୦ |
| | ଘ) ଅଭିନୟ | ୧୦ |
| | ଙ) ମୂକାଭିନୟ | ୧୧ |
| | ଚ) ଅଭିନେତାର ଆବଶ୍ୟକୀୟ ପ୍ରସ୍ତୁତି | ୧୨ |
| ୪. | ଦୃଶ୍ୟସଜ୍ଜା | ୧୩ |
| | କ) ନେପଥ୍ୟ | ୧୩ |
| | ଖ) ଦୃଶ୍ୟସଜ୍ଜାର ଶ୍ରେଣୀ | ୧୩ |
| | ଗ) ଦୃଶ୍ୟସଜ୍ଜାରେ ରଙ୍ଗର ପ୍ରୟୋଗ | ୧୫ |
| | ଘ) ଆନୁସଙ୍ଗୀକ ଉପକରଣ | ୧୫ |
| | ଙ) ବିଦ୍ୟାଳୟରେ ମଞ୍ଚସ୍ଥ ନାଟକର ଦୃଶ୍ୟସଜ୍ଜା | ୧୬ |
| ୫. | ରୂପସଜ୍ଜା | ୧୮ |
| | କ) ପୋଷାକ ଓ ଅଳଙ୍କାର | ୧୮ |
| | ଖ) ପ୍ରସାଧନ | ୧୯ |
| | ଗ) ପ୍ରସାଧନର ପ୍ରୟୋଗ ବିଧି | ୨୦ |

| ବିଷୟ | | ପୃଷ୍ଠା |
|---|---|---|
| | ଘ) ନାଟକର ଚରିତ୍ର ଉପଯୋଗୀ ପ୍ରସାଧନ | ୨୦ |
| | ୧) ସରଳ ପ୍ରସାଧନ ପଦ୍ଧତି | ୨୦ |
| | ୨) ଯୌବନର ପ୍ରସାଧନ | ୨୧ |
| | ୩) ମଧ୍ୟ ବୟସ୍କର ପ୍ରସାଧନ | ୨୧ |
| | ୪) ବାର୍ଦ୍ଧକ୍ୟର ପ୍ରସାଧନ | ୨୧ |
| | ୫) ଅତି ବାର୍ଦ୍ଧକ୍ୟର ପ୍ରସାଧନ | ୨୧ |
| ୬. | ମଞ୍ଚରେ ଆଲୋକ ନିୟନ୍ତ୍ରଣ | ୨୨ |
| | କ) ଆଲୋକର ମିଶ୍ରଣ | ୨୨ |
| | ଖ) ରଙ୍ଗୀନ ଆଲୋକର ପ୍ରଭାବ | ୨୩ |
| ୭. | ମଞ୍ଚରେ ଶବ୍ଦ ନିୟନ୍ତ୍ରଣ | ୨୪ |
| ୮. | ପ୍ରଯୋଜନା | ୨୮ |
| | କ) ନାଟକ ଚୟନ | ୨୮ |
| | ଖ) ଅଭିନେତା ଅଭିନେତ୍ରୀ ଚୟନ | ୨୮ |
| | ଗ) ନାଟ୍ୟାଭାସ | ୨୯ |
| | ଘ) ରଙ୍ଗଭୂମିରେ ଅଭିନୟର ସ୍ଥାନ | ୩୦ |
| | ଙ) ଅଭିନେତା ଅବସ୍ଥାନ | ୩୧ |
| | ଚ) ନାଟକ ଅଭିନୟର ପ୍ରଯୋଜନା | ୩୩ |
| ୯. | ଯାତ୍ରା ଓ ପାଲା | ୩୪ |
| ୧୦. | ନାଟକ : ଜନନୀ ଜନ୍ମଭୂମିଶ୍ଚ | ୩୯ |
| ୧୧. | ନାଟକ : ସ୍ୱାଭିମାନ | ୭୭ |
| ୧୨. | ନାଟକ : ଆଦ୍ୟ- ଅଧୁନା- ଭବିତବ୍ୟ | ୯୬ |

# ବିଦ୍ୟାଳୟ ଓ ନାଟକ ଶିକ୍ଷା

## ବିଦ୍ୟାଳୟ ପରିବେଶରେ ନାଟକ ଶିକ୍ଷା :-

ଆମ ରାଜ୍ୟର ବହୁସଂଖ୍ୟକ ବିଦ୍ୟାଳୟ ଗ୍ରାମାଞ୍ଚଳରେ ହୋଇଥିବାରୁ ପ୍ରାକୃତିକ ପରିବେଶଦ୍ୱାରା ତାହା ସମୃଦ୍ଧ ହୋଇଥାଏ । ଏଣୁ ଗ୍ରାମାଞ୍ଚଳର ଛାତ୍ର-ଛାତ୍ରୀମାନେ ଆଜନ୍ମ ପ୍ରକୃତିରୁ ହିଁ ନିଜର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥାନ୍ତି । ସେଇଥିପାଇଁ ବୋଧହୁଏ ସେମାନଙ୍କ ମଧ୍ୟରେ ପରସ୍ପର ବନ୍ଧୁତ୍ୱ ଓ ସ୍ନେହର ବନ୍ଧନ ଏତେ ସୁଦୃଢ । ପ୍ରାୟ ପ୍ରତ୍ୟେକ ଗାଁରେ ପିଲାମାନେ ନିଜ ନିଜର ଗାଁମୁଣ୍ଡ ତୋଟା, ଦାଣ୍ଡ ଗୋହିରିରେ ଦଳବନ୍ଧ ହୋଇ ଭାତ ରନ୍ଧା ଖେଳ, ଚୋରପୋଲିସ ଖେଳ, ଅନ୍ଧପୁଟୁଳି, ସୀତା ଚୋରି ଆଦି ଖେଳ ଖେଳନ୍ତି । ଏପରିକି ଗାଁର ବିଭିନ୍ନ ପର୍ବ ପର୍ବାଣିରେ ଯାତ୍ରାଦଳର ଅଭିନୟ ପରେ ପିଲାମାନଙ୍କ ମଧ୍ୟରେ ରାଜା ରାଣୀ ସାଜି ଅଭିନୟ କରିବାର ଦୃଶ୍ୟ ଦେଖାଯାଏ । ପିଲାମାନେ ଇଟାଗୁଣ୍ଡ, ହଳଦୀଗୁଣ୍ଡ, ହାଣ୍ଡିକଳାକୁ ରଙ୍ଗଭାବେ ବ୍ୟବହାର କରି, ଝୋଟ, ନଡିଆ କତାକୁ ନିଶ ଦାଢ଼ି ଭାବେ ଲଗାଇ ବାପା, ମାଆଙ୍କର ଲୁଗାକୁ ନିଜର ପୋଷାକ ଭାବେ ବ୍ୟବହାର କରି ବାଉଁଶ ବତାରେ ଖଣ୍ଡା, ଛୁରୀ ତିଆରି କରି ଏଥିରେ ଅଳତାର ରଙ୍ଗ ଲଗାଇ ସେମାନଙ୍କ ନାଟକ ଖେଳ ଆରମ୍ଭ କରନ୍ତି ଆପଣା ମନର ଅଦମ୍ୟ ଉତ୍ସାହରେ । ତାହାର ନାଟ୍ୟକାର କିଏ, ନିର୍ଦ୍ଦେଶକ କିଏ, ଏପରିକି ଦର୍ଶକ ବା କିଏ ସେଥିପ୍ରତି ତାଙ୍କର ଭ୍ରୁକ୍ଷେପ ନଥାଏ । ଏହି ପ୍ରକାର ଖେଳର ଅନୁଭୁତି ହିଁ ଆମ ନାଟକ ଶିକ୍ଷାର ପୃଷ୍ଠଭୂମି । ସ୍କୁଲର ନାଟକ ଶିକ୍ଷା ନାଟ୍ୟତତ୍ତ୍ୱ କିମ୍ବା ମଞ୍ଚ କୌଶଳର ଅଧ୍ୟୟନ ନ ହୋଇ ସ୍କୁଲ ଛାତ୍ରଛାତ୍ରୀମାନଙ୍କ ମନରେ କଳାତ୍ମକ ରୁଚିର ଜାଗରଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଅବିନଶ୍ୱର ମାନବିକ ଗୁଣ ତଥା ଗୋଷ୍ଠୀଗତ ମନୋଭାବର ବିକାଶ ଏବଂ ପରିପ୍ରକାଶ କରିବା ପାଇଁ ନିୟୋଜିତ ହେବା ବାଞ୍ଛନୀୟ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସ୍କୁଲରେ ନାଟ୍ୟ ଶିକ୍ଷାର ଉଦ୍ଦେଶ୍ୟ ନାଟ୍ୟ ଶିକ୍ଷାର ପ୍ରଚାର ବା ପ୍ରସାର କରିବା ନୁହେଁ, ବରଂ ନାଟକ ହିଁ ଛାତ୍ରଛାତ୍ରୀମାନଙ୍କୁ ସର୍ବସାଧାରଣରେ ନିଜର ଅଭିବ୍ୟକ୍ତି ରଖିବାର ସାହସ ଲାଭ କରିବା ତଥା ସେମାନଙ୍କ ମଧ୍ୟରେ ସୁପ୍ତାବସ୍ଥାରେ ଥିବା ଭାଷ୍ୟକାରିତାର ପ୍ରସ୍ଫୁଟନ କରାଇବାରେ ସାହାଯ୍ୟ କରିଥାଏ । ଏହାଦ୍ୱାରା ପିଲାମାନଙ୍କ ମଧ୍ୟରେ ନେତୃତ୍ୱର ବିକାଶ ଲାଭ କରେ । ସେମାନେ ନାଟକ ମାଧ୍ୟମରେ ବିଭିନ୍ନ ସାମାଜିକ ଚରିତ୍ରକୁ ଅନୁଧ୍ୟାନ ଓ ଅନୁଶୀଳନ କରିବା ସଙ୍ଗେ ସଙ୍ଗେ ଉକ୍ତ ଚରିତ୍ର ପ୍ରତି ସମାଜର ଦୃଷ୍ଟିଭଙ୍ଗୀ ବିଷୟରେ ସଚେତନ ହୋଇପାରନ୍ତି ଓ ଏହାଦ୍ୱାରା

ନିଜର ଚାଲିଚଳନ ଓ ଆଚାର ବ୍ୟବହାରକୁ ସୁସଂଗତ କରିପାରନ୍ତି । କେବଳ ସେତିକି ନହେଁ ନାଟକହିଁ ସେମାନଙ୍କୁ ବାଲ୍ୟକାଳରୁ ସମାଜର ବିଭିନ୍ନ ସମସ୍ୟା, କୁ-ସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରତି ସଚେତନ କରାଇଥାଏ । ଏହାଦ୍ୱାରା ସେମାନେ ସମାଜରେ ଦେଖା ଦେଇଥିବା ବିଭିନ୍ନ ସମସ୍ୟାର ସମାଧାନ ଖୋଜିବାରେ ବ୍ରତୀ ହେବା ସଙ୍ଗେ ସଙ୍ଗେ ସମାଜର କୁ ସଂସ୍କାରଗୁଡ଼ିକୁ ଦୂର କରିବାରେ ଆଗ୍ରହୀ ହୁଅନ୍ତି । ଏହା ନିଶ୍ଚିତ ଯେ ନାଟକଦ୍ୱାରା ଛାତ୍ରଛାତ୍ରୀମାନଙ୍କର ବାକ୍‌ଶକ୍ତି, ସୃଜନୀ ଶକ୍ତି, ଚିନ୍ତା ଓ ଚେତନାର ଜାଗରଣ, ସ୍ୱଷ୍ଟ ଉଚ୍ଚାରଣ, ସାହିତ୍ୟ ପ୍ରତି ଅହେତୁକ ଆକର୍ଷଣ ତଥା ପରିମାର୍ଜିତ କଥନ ଶୈଳୀରେ ବିକାଶ ଘଟିଥାଏ । ସର୍ବୋପରି ନାଟକ ଛାତ୍ରଛାତ୍ରୀମାନଙ୍କୁ ସ୍ୱର୍ଶ କାତର ନାଗରିକ ଭାବେ ଗଢ଼ି ସେମାନଙ୍କୁ ଅଧିକ ସଂସ୍କୃତ ଓ ରୁଚିସଂପନ୍ନ କରିବାରେ ସହାୟକ କରିଥାଏ । ପିଲାମାନଙ୍କ ମଧ୍ୟରେ ଉତ୍ତମ ଚରିତ୍ର ଓ ଉନ୍ନତ ବ୍ୟକ୍ତିତ୍ୱର ବିକାଶ କରିବା ଲାଗି ନାଟକ ଏକ ସୁନ୍ଦର ମାଧ୍ୟମ ।

## ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ନାଟକ ରଚନା ଓ ପ୍ରଯୋଜନା :

ବିଦ୍ୟାଳୟର କଳାଶିକ୍ଷା ପାଠ୍ୟକ୍ରମ ମାଧ୍ୟମରେ ନାଟକର ଶାସ୍ତ୍ରୀୟ ତଥା ତାତ୍ତ୍ୱିକ ଦିଗ ଆଲୋଚନା କରିବା ଆମର ଉଦ୍ଦେଶ୍ୟ ନୁହେଁ । ନାଟକ ମାଧ୍ୟମରେ ପିଲାମାନଙ୍କ ମଧ୍ୟରେ ଶୃଙ୍ଖଳା, ସଂଗଠନ, ସାହିତ୍ୟ ସାଧନା ଓ ନେତୃତ୍ୱ ବିକାଶ କରିବା, ପିଲାଙ୍କ ମନରେ ଏକ ଉନ୍ନତ ରୁଚି ସୃଷ୍ଟି କରିବା ଆମର ଲକ୍ଷ୍ୟ । ଏଥିପାଇଁ ସ୍ୱତନ୍ତ୍ର ସମୟ ବା ସ୍ୱତନ୍ତ୍ର ଭାବେ ତାଲିମ ପ୍ରାପ୍ତ ଶିକ୍ଷକଙ୍କର ଆବଶ୍ୟକତା ନାହିଁ । ସାହିତ୍ୟ, ଇତିହାସ ଭଳି ବିଷୟ ଅନ୍ତର୍ଭୁକ୍ତ ବିଭିନ୍ନ ପାଠକୁ ନାଟ୍ୟରୂପ ଦେବାର ଦାୟିତ୍ୱ ପିଲାଙ୍କୁ ଦିଆଯାଇପାରେ ଓ ସେହି ନାଟ୍ୟରୂପର ବିଭିନ୍ନ ଚରିତ୍ରକୁ ଭିନ୍ନ ଭିନ୍ନ ପିଲାଙ୍କୁ ଦେଇ ପାଠଟିକୁ ସଂଳାପରେ ପ୍ରକାଶ କଲେ ପିଲାଙ୍କ ଉପରେ ଏହାର ପ୍ରଭାବ ଅଧିକ ହୋଇଥାଏ । ଏହା ଆମର ସାଧାରଣ ଅନୁଭୂତି ଯେ କୌଣସି ଏକ ବିଷୟବସ୍ତୁକୁ ବହିରୁ ପଢ଼ିଲେ ଏହା ମନକୁ ଯେତିକି ପ୍ରଭାବିତ କରେ ନାଟକରେ ଦେଖିଲେ ତାହା ଅଧିକ ପ୍ରଭାବିତ କରିଥାଏ ।

ବିଦ୍ୟାଳୟରେ ନାଟକ ଅଭିନୟ କରିବା ପାଇଁ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଛାତ୍ରଛାତ୍ରୀମାନେ ନିଜେ ନାଟକ ଲେଖିବା, ଏହାର ବିଭିନ୍ନ ଚରିତ୍ରରେ ଅଭିନୟ କରିବା ଓ ନାଟକ ପାଇଁ ବିଭିନ୍ନ ଉପକରଣର ପ୍ରସ୍ତୁତି କରିବା ଆଦି ସମସ୍ତ କାର୍ଯ୍ୟ ତୁଲାଇବା ବିଧେୟ । ଅର୍ଥାତ୍ କୌଣସି ଏକ ଗଳ୍ପ (ନିଜର ପାଠ୍ୟ ବସ୍ତୁ ଅନ୍ତର୍ଭୁକ୍ତ) କୁ ଏକାଧିକ ଛାତ୍ରଛାତ୍ରୀ ନାଟ୍ୟ ରୂପ ଦେବେ । ଆବଶ୍ୟକ ହେଲେ ଶିକ୍ଷକ ସେଗୁଡିକୁ ପରିମାର୍ଜନ କରିବେ । 'ନିରକ୍ଷରତା କଳଙ୍କ', 'ନାରୀ ନିର୍ଯ୍ୟାତନା', 'ଯୌତୁକ-ବ୍ୟାଧି', 'ନିଶା ସେବନ', "କନ୍ୟା

ଭ୍ରୂଣହତ୍ୟା", "ଅନ୍ଧ ବିଶ୍ୱାସ", "ପରିଷ୍କାର ପରିଚ୍ଛନ୍ନତା" ପରିବେଶ ସୁରକ୍ଷା ଆଦି ସାମାଜିକ ସମସ୍ୟାକୁ ନେଇ ମଧ୍ୟ ନାଟକ ରଚନା କରିବାର ଦାୟିତ୍ୱ ପିଲାଙ୍କୁ ଦିଆଯାଇ ପାରେ । ଏସବୁ ବିଷୟରେ 'ପ୍ରବନ୍ଧ' ଲେଖିବା ପ୍ରତି ପିଲାଏ ଆଗ୍ରହ ଦେଖାନ୍ତି ନାହିଁ ମାତ୍ର ନାଟକ ଲେଖିବାରେ ସେମାନେ ନିଶ୍ଚୟ ଆଗ୍ରହ ଦେଖାଇବେ ଓ ଏହା ଫଳରେ ପ୍ରବନ୍ଧ ଲେଖିବାର ଦକ୍ଷତା ତାଙ୍କର ବୃଦ୍ଧି ପାଇବ ।

ପିଲାଙ୍କ ଦ୍ୱାରା ଏହିସବୁ ନାଟକ ସୃଷ୍ଟି କରାଇବା ପରେ ସେଗୁଡିକୁ ଶିକ୍ଷକ ବିଭିନ୍ନ ସମୟରେ ମଞ୍ଚସ୍ଥ କରାଇବେ । ଏଥିପାଇଁ ସ୍ୱତନ୍ତ୍ର ମଞ୍ଚର ଆବଶ୍ୟକତା ନାହିଁ । ବିଦ୍ୟାଳୟର ଅଗଣା ହିଁ ଯଥେଷ୍ଟ । ଏପରି ନାଟକ ମାସରେ ଥରେ ବା ଦୁଇଥର ଅଭିନୟ କରାଯାଇପାରେ । କଳାଶିକ୍ଷାପାଇଁ ଉଦ୍ଦିଷ୍ଟ ଦୁଇଟି ପିରିଅଡ ହିଁ ଏଥିପାଇଁ ଯଥେଷ୍ଟ । ଏପରି ନାଟକରେ ଯଥାସମ୍ଭବ ପ୍ରତ୍ୟେକ ଛାତ୍ର ଛାତ୍ରୀଙ୍କୁ ଅଂଶଗ୍ରହଣ କରିବାକୁ ଶିକ୍ଷକ ପ୍ରବର୍ତ୍ତାଇବା ଉଚିତ୍ ।

କେତେକ କୃତୀ ଶିକ୍ଷକ ଗଣିତ, ଭୁଗୋଳ, ଇତିହାସ ଓ ବିଜ୍ଞାନ ଆଦି ତଥ୍ୟ ସମ୍ବଳିତ ବିଷୟକୁ ଗୀତିନାଟ୍ୟ ରୂପରେ ପ୍ରଯୋଜିତ କରି ଓ ସେଗୁଡିକୁ ପିଲାଙ୍କୁ ଶିକ୍ଷା ଦେଇ ତାଙ୍କ ଶିକ୍ଷକ ଜୀବନରେ ସୁଫଳ ପାଇଥିବାର ଦୃଷ୍ଟାନ୍ତ ରହିଛି ।



# ନାଟକ, ନାଟ୍ୟମଞ୍ଚ ଓ ଅଭିନୟ

## ନାଟକ ଓ ନାଟ୍ୟତତ୍ତ୍ୱ :

ନାଟ୍ୟ, ନାଟକ, ନଟ ଶବ୍ଦଗୁଡିକ 'ନଟ୍' ଧାତୁରୁ ଉଦ୍ଭବ ହୋଇଅଛି । ନଟ୍ ଧାତୁର ଅର୍ଥ ନୃତ୍ୟ ହୋଇଥିଲେ ମଧ୍ୟ ସଂସ୍କୃତ ସାହିତ୍ୟରେ ଏହି ନଟ୍ ଶବ୍ଦକୁ ଅଭିନୟ ଅର୍ଥରେ ଗ୍ରହଣ କରାଯାଇଛି । ଏଣୁ 'ନାଟକ' ଶବ୍ଦର ଅର୍ଥ ଅଭିନୟ- କଳା ।

ଭରତମୁନିଙ୍କ ମତରେ "ଲୋକ ବୃତ୍ତାନୁକରଣମ୍ ନାଟକମ୍" । ଅର୍ଥାତ୍, ନାଟକ ମାନବ ଜୀବନର ପ୍ରତିଛବି ପ୍ରଦାନ କରେ । ସେଥିପାଇଁ କୁହାଯାଏ, ଏପରି କିଛି ଜ୍ଞାନ ନାହିଁ, ଏପରି କିଛି ଶିଳ୍ପ ନାହିଁ, ଏପରି କୌଣସି ବିଦ୍ୟା ବା କଳା ନାହିଁ, ଏପରି କିଛି ଯୋଗ ବା କର୍ମ ନାହିଁ, ଯାହା ନାଟକରେ ଦେଖାଯାଏ ନାହିଁ । ନାଟକ ମାନବ ଜୀବନର ସମସ୍ତ ଦିଗକୁ ଦୃଶ୍ୟମାନ କରାଏ ।

ନାଟ୍ୟ କଳାର ଦୁଇଗୋଟି ମୁଖ୍ୟ ଦିଗ ରହିଛି । ଏହାର ଗୋଟିଏ ଦିଗ ହେଉଛି ନାଟ୍ୟ ସାହିତ୍ୟ, ନାଟ୍ୟ ମଞ୍ଚ, ଦର୍ଶକ ଏବଂ ନାଟ୍ୟାଭିନୟ । ଏହାହିଁ ନାଟକର ପ୍ରତ୍ୟକ୍ଷ ଦିଗ । ଅନ୍ୟ ଦିଗଟି ହେଲା ନାଟ୍ୟ ନିର୍ଦ୍ଦେଶନା, ମଞ୍ଚ ନିର୍ମାଣ, ସଙ୍ଗୀତ ନିର୍ଦ୍ଦେଶନା, ରୂପ ସଜ୍ଜା, ପୋଷାକ ପରିଚ୍ଛଦ, ବେଶ ସଜ୍ଜା ଏବଂ ଆଲୋକ ସମ୍ପାତ ଇତ୍ୟାଦି । ଏହି ଦିଗକୁ ପରୋକ୍ଷ ବା ନେପଥ୍ୟ ଦିଗ କୁହାଯାଇପାରେ । ନାଟ୍ୟକାରଙ୍କୁ ଏହି ସମସ୍ତ ଦିଗପ୍ରତି ଦୃଷ୍ଟି ଦେବାକୁ ପଡିଥାଏ । ମାତ୍ର ଏହି ସମସ୍ତ ବିଷୟରେ ପ୍ରତ୍ୟେକ ନାଟ୍ୟକାର ଯେ ସିଦ୍ଧହସ୍ତ ହେବେ, ତାହା ସବୁକ୍ଷେତ୍ରରେ ସମ୍ଭବ ନ ହୋଇପାରେ । ସେହିପରି କ୍ଷେତ୍ରରେ ନାଟ୍ୟକାର ଅଥବା ପ୍ରଯୋଜକଙ୍କୁ ଭିନ୍ନ ଭିନ୍ନ ବିଷୟରେ ଅଭିଜ୍ଞ ବ୍ୟକ୍ତିଙ୍କଠାରୁ ସାହାଯ୍ୟ ନେବାକୁ ପଡିଥାଏ । ଅଭିନୟ ଉପଯୋଗୀ ଯେ କୌଣସି ଏକ ନାଟକକୁ ବିଶ୍ଳେଷଣ କଲେ ଆମେ ଦେଖିପାରିବା ଯେ ଏହା ମୁଖ୍ୟତଃ ଛଅଗୋଟି ମୌଳିକ ଉପାଦନାକୁ ନେଇ ଗଠିତ ହୋଇଛି । ଏହି ଉପାଦାନଗୁଡିକ ହେଲା, କାହାଣୀ ବା ବୃତ୍ତ (plot), ଚରିତ୍ର (character), ସଂଳାପ (diction), ଦ୍ୱନ୍ଦ୍ୱ (conflict), ଦୃଶ୍ୟ ସଜ୍ଜା (spectacle), ଏବଂ ସଙ୍ଗୀତ (music) । ନାଟ୍ୟବୃତ୍ତର ଗଠନ ପ୍ରଣାଳୀ ଓ ତାହାର ଗତି ପ୍ରକୃତି, ନାଟ୍ୟ ଉତ୍କଣ୍ଠାର ଅବତାରଣା, ଭିନ୍ନ ଭିନ୍ନ ଚରିତ୍ର ରୂପାୟନର କୌଶଳ, ଚରିତ୍ର ଓ ତା'ର ମାନସିକ ଅବସ୍ଥା ଅନୁଯାୟୀ ସଂଳାପ ରଚନାର ଶୈଳୀ, ପରିବେଶ ସୃଷ୍ଟିର କୌଶଳ, ସାର୍ଥକ ଦୃଶ୍ୟ ସଜ୍ଜା, ସଙ୍ଗୀତର ସଫଳ ପ୍ରୟୋଗ

ପ୍ରଭୃତି ବିଷୟ ନାଟ୍ୟ ତତ୍ତ୍ୱର ଅନ୍ତର୍ଗତ । ଉପରୋକ୍ତ ଉପାଦାନ ଗୁଡିକୁ ଅନୁସରଣ କରି ନାଟକ ରଚନା କରାଯିବା ଉଚିତ୍ ।

ନାଟ୍ୟ-ବୃତ୍ତର ପ୍ରକୃତି ଓ ପରିଣତି ଦୃଷ୍ଟିରୁ ନାଟକକୁ ମୁଖ୍ୟତଃ ଦୁଃଖାନ୍ତକ (tragedy), ସୁଖାନ୍ତକ (comedy), ଦୁଃଖ-ସୁଖାନ୍ତକ (tragi-comedy), ଅତି ନାଟକ (melodrama), ଓ ପ୍ରହସନ (farce) ଭାବେ ବିଭକ୍ତ କରାଯାଇପାରେ । ନାଟ୍ୟ-ବୃତ୍ତ ସାଧାରଣତଃ ଏକ ପଞ୍ଚ-ବକ୍ର-ଗତିପଥ ଅନୁସରଣ କରି ଲକ୍ଷ୍ୟସ୍ଥଳରେ ପହଞ୍ଚି ସମାପ୍ତ ହୁଏ । ଏହି ପଞ୍ଚ-ବକ୍ର-ଗତିପଥ ଅତିକ୍ରମ କରିବାପାଇଁ ନାଟ୍ୟକାର ପ୍ରଥମ ପର୍ଯ୍ୟାୟରେ ଏକ ନାଟକୀୟ କାହାଣୀର ଅବତାରଣା କରନ୍ତି । ଏହି କାହାଣୀର ସ୍ୱାଭାବିକ ଗତି ପରିଣତି ପଥରେ ଗତିକରି ଦ୍ୱିତୀୟ ପର୍ଯ୍ୟାୟରେ ପହଞ୍ଚି ବାଧାପ୍ରାପ୍ତ ହୁଏ ଏବଂ ଏକ ଭିନ୍ନ ଦିଗକୁ ଗତି ବଦଳାଇ ନିର୍ଦ୍ଧାରିତ ପରିଣତି ଆଡକୁ ଅଗ୍ରସର ହୁଏ । କାହାଣୀ ତୃତୀୟ ପର୍ଯ୍ୟାୟରେ ପହଞ୍ଚିଲା ବେଳେ ଏହାର ଗତି ଯଥାଯଥ ପରିଣତିରେ ପହଞ୍ଚିବା ଘେନି ଦର୍ଶକ ମନରେ ସନ୍ଦେହ, ଆଶଙ୍କା ଅଥବା ଦ୍ୱନ୍ଦ୍ୱ ଜାତ ହୁଏ । ଚତୁର୍ଥ ପର୍ଯ୍ୟାୟରେ କାହାଣୀର ଗତି ଏକ ନିର୍ଦ୍ଦିଷ୍ଟ ପରିଣତିରେ ପହଞ୍ଚି ଦର୍ଶକ ମନରେ ସୁଖ ବା ଦୁଃଖର ଅନୁଭୁତି ସୃଷ୍ଟି କରେ । ପଞ୍ଚମ ବା ଶେଷ ପର୍ଯ୍ାୟରେ ପହଞ୍ଚି ଘଟଣାର ଗତି ସମାପ୍ତ ହୁଏ ଏବଂ ଦର୍ଶକ ନାଟକର ପରିଣତି ଘେନି ସଂପୂର୍ଣ୍ଣ ଭାବେ ଆଶଙ୍କାମୁକ୍ତ ହୋଇଯାଏ ।

ନାଟ୍ୟବୃତ୍ତ ପରେ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ନାଟକର ଚରିତ୍ର । ଚରିତ୍ରହିଁ ନାଟ୍ୟବୃତ୍ତର ବାହକ, କର୍ମର କର୍ତ୍ତା । ତେଣୁ ନାଟ୍ୟକାର ବୃତ୍ତାନୁଯାୟୀ ଚରିତ୍ରଗୁଡିକୁ ସୃଷ୍ଟି କରିଥାନ୍ତି । ଚରିତ୍ରଗୁଡିକର ବୈଶିଷ୍ଟ୍ୟ ଓ ଦର୍ଶକକୁ ପ୍ରଭାବିତ କରିବାର କ୍ଷମତା ଉପରେ ନାଟ୍ୟ- ବୃତ୍ତର ସଫଳତା ନିର୍ଭର କରେ । ସମାଜରେ ଦୃଷ୍ଟ ଚରିତ୍ରଗୁଡିକ ନିଜ ନିଜର ଋରିତ୍ରିକ ବୈଶିଷ୍ଟ୍ୟ, ଋଲିଚଳନ, ଭାବଭଙ୍ଗୀ, ଶିକ୍ଷାଦୀକ୍ଷା, ଦୋଷଗୁଣ, ଏପରିକି ଜୀବନର ଦର୍ଶନ ଘେନି ପରସ୍ପରଠାରୁ ଭିନ୍ନ । ତେଣୁ ନାଟ୍ୟକାର ନାଟକର ପ୍ରତ୍ୟେକ ଚରିତ୍ରକୁ ଅନ୍ୟ ଚରିତ୍ରଠାରୁ ଭିନ୍ନ କରି ଗଢିଥାନ୍ତି । ଶାରୀରିକ, ମାନସିକ ଓ ସାମାଜିକ ପଟ୍ଟଭୂମିର ଭିନ୍ନତାଦ୍ୱାରା ହିଁ ଚରିତ୍ରଗୁଡିକ ମଧ୍ୟରେ ଭିନ୍ନତା ସୃଷ୍ଟି କରାଯାଇପାରେ ।

ନାଟକରେ ସୃଷ୍ଟ ଚରିତ୍ରଗୁଡିକ ସର୍ବଦା ପ୍ରକାଶଧର୍ମୀ ଅର୍ଥାତ୍ ପୁରୁଷୋତ୍ତମ ଦେବତୁଲ୍ୟ କିମ୍ବା କେବଳ ଦୋଷଯୁକ୍ତ ନ ହେବା ବାଞ୍ଛନୀୟ । ଚରିତ୍ରମାନେ ହେବେ କର୍ମବାଦୀ, ନିଜର ଉତ୍‌ଥାନ ପତନ ପାଇଁ ନିଜେ ଦାୟୀ ରହିବେ । କାରଣ, ଭାଗ୍ୟବାଦୀ

ଚରିତ୍ରମାନେ ସାଧାରଣତଃ ନିଷ୍କ୍ରିୟ ହୋଇଥାନ୍ତି । ପୁଣି, ଚରିତ୍ରମାନେ ଯଦି କେବଳ କ୍ରିୟାଶୀଳ ହୁଅନ୍ତି ତେବେ ନାଟକ ଘଟଣା- ପ୍ରଧାନ ହେବାକୁ ବାଧହୁଏ । ତେଣୁ ଚରିତ୍ରମାନେ କ୍ରିୟାଶୀଳ ହେବା ସଙ୍ଗେ ସଙ୍ଗେ ଚିନ୍ତନଶୀଳ ହେଲେ ନାଟକଟି ମନନଧର୍ମୀ ହୋଇଥାଏ ।

ନାଟ୍ୟକାର ନାଟକର ଗତି ଓ ବିକାଶକୁ କ୍ଷିପ୍ର କରିବା ସଙ୍ଗେ ସଙ୍ଗେ ଚରିତ୍ରମାନଙ୍କର ଚିନ୍ତା ଓ କ୍ରିୟାଶୀଳତାକୁ ମଧ୍ୟ କ୍ଷିପ୍ର କରିଥାନ୍ତି । ସାମାଜିକ ବାସ୍ତବତାରୁ ଅବତାରଣା କରାଯାଇଥିବା ଚରିତ୍ରଗୁଡିକ ଦର୍ଶକମାନଙ୍କର ବିଶ୍ୱାସ ଯୋଗ୍ୟ ହୋଇପାରନ୍ତି । ଅନାବଶ୍ୟକ ଓ ଅତ୍ୟଧିକ ଚରିତ୍ରର ଅବତାରଣ ନାଟକର ଗତିକୁ ମନ୍ଥର ଓ ନାଟକକୁ ନିର୍ଜୀବ କରିଦିଏ ।

ପ୍ରତ୍ୟେକ ଚରିତ୍ରର କ୍ରମବିକାଶ ପାଇଁ ନାଟ୍ୟକାରଙ୍କୁ ଅନ୍ୟ ଚରିତ୍ରମାନଙ୍କର ସଂଳାପ ଓ କାର୍ଯ୍ୟ ଉପରେ ନିର୍ଭର କରିବାକୁ ପଡ଼ିଥାଏ । କୌଣସି ଏକ ଚରିତ୍ରର ଦୋଷଗୁଣ ସେହି ଚରିତ୍ର ମୁଖରେ ପ୍ରକାଶିତ ନହୋଇ ଅନ୍ୟ ଚରିତ୍ରମାନଙ୍କ ସଂଳାପରେ ଆଲୋଚିତ ହେବା ବାଞ୍ଛନୀୟ । ନେପଥ୍ୟ କଥନ, ଶୂନ୍ୟ ବାଣୀ କିମ୍ବା ଗୀତ ମାଧ୍ୟମରେ ମଧ୍ୟ କୌଣସି ଚରିତ୍ରର ବୈଶିଷ୍ଟ୍ୟ ପ୍ରକାଶ କରାଯାଇପାରେ । ସଫଳ ଚରିତ୍ରାୟନ ନାଟକକୁ ଚିରନ୍ତନ ମୂଲ୍ୟ ପ୍ରଦାନ କରେ ।

ସଂଳାପ ହେଲା ନାଟକର ଭାଷା ବା ବକ୍ତବ୍ୟ । ସଂଳାପ ସର୍ବଦା ସୁବୋଧ, ସାବଲୀଳ ଓ ସ୍ୱାଭାବିକ ହେବା ଆବଶ୍ୟକ । ନାଟକର ସଂଳାପ ଗୀତିମୟ, ଛନ୍ଦମୟ, ଅମିତ୍ରାକ୍ଷରଯୁକ୍ତ, ଗଦ୍ୟ ଛନ୍ଦଯୁକ୍ତ ଅଥବା ମିଶ୍ରିତଛନ୍ଦ ଯୁକ୍ତ ହୋଇପାରେ । ସଂଳାପରେ ଭାଷା ସର୍ବଦା ଚରିତ୍ରାନୁଯାୟୀ ହେବା ପ୍ରୟୋଜନ । ଚରିତ୍ର ମୁହଁରେ ଅନାବଶ୍ୟକ ଅଥବା ଅତ୍ୟଧିକ ସଂଳାପର ବ୍ୟବହାର ନ କରି ସ୍ୱଳ୍ପ ସଂଳାପ ମାଧ୍ୟମରେ ବହୁ କଥା ବୁଝାଇ ପାରୁଥିବାଭଳି ସଂଳାପ ବ୍ୟବହାର କରାଯିବା ଉଚିତ୍ । ପ୍ରତ୍ୟେକ ସଂଳାପ ଏପରି ସୃଜନଶୀଳ ହୋଇଥିବା ଦରକାର ଯେ ତାହା ଦର୍ଶକଙ୍କ ମନରେ ପରବର୍ତ୍ତୀ ଘଟଣା ପ୍ରତି ଉତ୍ସୁକତା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ନାଟକୀୟ ଉତ୍କଣ୍ଠାର ମଧ୍ୟ ଅଭିବୃଦ୍ଧି ଘଟାଇପାରିବ । ସଂଳାପ ହେବ ପ୍ରଶ୍ନୋତ୍ତର ଧର୍ମୀ, ସଂକ୍ଷିପ୍ତ, ସୁଶ୍ରାବ୍ୟ ଏବଂ ସାତ୍ତ୍ୱିକ ବା ମାନସିକ କ୍ରିୟା ପ୍ରତିକ୍ରିୟାର ପ୍ରତିଫଳନ ଧର୍ମୀ ।

ନାଟ୍ୟକାର କାହାଣୀର କ୍ରମବିକାଶ ଏପରି ଶୈଳୀରେ କରିଥାନ୍ତି ଯେ ତାହା ଦର୍ଶକ ମନରେ ଉତ୍କଣ୍ଠା, ଆଶା-ନିରାଶାର ସମ୍ଭବନା ଓ ଦ୍ୱନ୍ଦ୍ୱ ସୃଷ୍ଟି କରିବାରେ ସମର୍ଥ

ହୁଏ । ଏହି ଦ୍ୱନ୍ଦ୍ୱ ନାଟକୀୟତା ସୃଷ୍ଟି କରିବାରେ ସାହାଯ୍ୟ କରେ । ନାଟକର କାହାଣୀରେ ଦ୍ୱନ୍ଦ୍ୱ ରହିବା ସଙ୍ଗେ ସଙ୍ଗେ ଚରିତ୍ର ଗୁଡିକଠାରେ ମଧ୍ୟ ଚରିତ୍ରର ଦ୍ୱନ୍ଦ୍ୱକୁ ବାହ୍ୟ ଦ୍ୱନ୍ଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ ଏଇ ଦୁଇ ଭାବରେ ରୂପାୟିତ କରି କାହାଣୀର ଗତିଶୀଳତା ଓ ଚରିତ୍ରର ମହନୀୟତା ବୃଦ୍ଧି କରାଯାଇପାରେ ।

ଦୃଶ୍ୟ -ବିଭାଜନ ନାଟକର ଏପରି ଏକ ଅଂଶ ଯାହାପ୍ରତି ନାଟ୍ୟକାର ଯଥେଷ୍ଟ ସଚେତନ ରହିଥାନ୍ତି । କାହାଣୀ ପ୍ରତି ଦର୍ଶକର ଉତ୍କଣ୍ଠାକୁ ଉଜ୍ଜୀବିତ କରି ରଖିବା ଉଦ୍ଦେଶ୍ୟରେ ନାଟ୍ୟକାର ନାଟକର ବିଭିନ୍ନ ଦୃଶ୍ୟକୁ କୁଶଳତାର ସହିତ ଅଳଙ୍କୃତ ଓ ସନ୍ନିବେଶିତ କରିଥାନ୍ତି । ଦୃଶ୍ୟରୁ ଦୃଶ୍ୟାନ୍ତରକୁ ଯିବାବେଳେ ନାଟ୍ୟକାର କୌଶଳକ୍ରମେ ସଂଳାପ, ଘଟଣା, ଅଥବା ଚରିତ୍ର ମାଧ୍ୟମରେ ଗୋଟିଏ ଦୃଶ୍ୟକୁ ପରବର୍ତ୍ତୀ ଦୃଶ୍ୟ ସହିତ ସଂଯୋଗ କରିଥାନ୍ତି । ଅନାବଶ୍ୟକ ଭାବେ ଦୃଶ୍ୟ ସଂଖ୍ୟା ବୃଦ୍ଧି କରିବା ଯେପରି ଅନୁଚିତ, ଦୃଶ୍ୟଗୁଡିକୁ ସ୍ୱଳ୍ପ ସମୟର ସ୍ଥାୟିତ୍ୱ ଦେଇ ଦୃଶ୍ୟାନ୍ତର କରିବା ମଧ୍ୟ ସେହିପରି ଅନୁଚିତ । ଅଧିକ ସଂଖ୍ୟକ ଦୃଶ୍ୟସଜ୍ଜା ମଧ୍ୟ ନାଟ୍ୟ ପ୍ରୟୋଜନାକୁ ବ୍ୟୟବହୁଳ କରିଦିଏ ।

ନାଟକରେ ସଙ୍ଗୀତ ସାଧାରଣତଃ ଦୃଶ୍ୟ ସଙ୍ଗୀତ ଏବଂ ନେପଥ୍ୟ ସଙ୍ଗୀତ ଅଥବା ଆବହ ସଙ୍ଗୀତ ଭାବରେ ବ୍ୟବହାର କରାଯାଏ । ଯେଉଁ ସଙ୍ଗୀତ ନାଟକ ଅଭିନୟ କାଳରେ ମଞ୍ଚ ଉପରେ ଦର୍ଶକଙ୍କ ସମ୍ମୁଖରେ ପରିବେଶିତ ହୁଏ ତାହାକୁ ଦୃଶ୍ୟ ସଙ୍ଗୀତ କୁହାଯାଏ । ନାଟକର ଉତ୍କଣ୍ଠା ଓ ରସର ସ୍ଫୁରଣ ନିମନ୍ତେ ସମୟ ସମୟରେ ନେପଥ୍ୟରୁ କଣ୍ଠ ବା ଯନ୍ତ୍ର ମାଧ୍ୟମରେ କିଛି ସଙ୍ଗୀତ ପରିବେଶିତ ହୋଇଥାଏ । ତାହାକୁ ନେପଥ୍ୟ ସଙ୍ଗୀତ କୁହାଯାଏ ।

ନାଟ୍ୟ ରଚନାର ବିଭିନ୍ନ ଦିଗ ସମ୍ବନ୍ଧରେ ଧାରଣା ଦେବା ଉଦ୍ଦେଶ୍ୟରେ ପୂର୍ବବର୍ତ୍ତୀ ଆଲୋଚନା କରାଯାଇଛି । ନାଟକ ରଚନାର ଉପରୋକ୍ତ ଦିଗମାନଙ୍କ ସମ୍ବନ୍ଧରେ ସମ୍ୟକ ଧାରଣା ଦେଇ ଛାତ୍ର ଛାତ୍ରୀମାନେ ନିଜର ପାଠ୍ୟ ପୁସ୍ତକ ଅନ୍ତର୍ଭୁକ୍ତ କାହାଣୀ, ସମସ୍ୟା ଅଥବା ଆଦର୍ଶର ନାଟ୍ୟରୂପ ସୃଷ୍ଟି କଲେ ତାଙ୍କର କଳାତ୍ମକ ରୁଚିର ବିକାଶ ଘଟିବା ସଙ୍ଗେ ସଙ୍ଗେ ବିଷୟବସ୍ତୁ ସମ୍ବନ୍ଧୀୟ ବିଶ୍ଳେଷଣାତ୍ମକ ଜ୍ଞାନ ମଧ୍ୟ ବୃଦ୍ଧି ପାଇବ ।

## ଆବଦ୍ଧ ନାଟ୍ୟମଞ୍ଚ:

ଦର୍ଶକମାନଙ୍କ ମଧ୍ୟସ୍ଥଳରେ ଅଥବା ସେମାନଙ୍କ ସମ୍ମୁଖ ଭାଗରେ ଅବସ୍ଥିତ ଏକ ସ୍ଥାନରେ ଅଭିନେତା ତାଙ୍କର ଅଭିନୟ ପ୍ରଦର୍ଶନ କରନ୍ତି । ଏହି ଅଭିନୟ ସ୍ଥାନକୁ ମଞ୍ଚ କୁହାଯାଏ ।

ଗୋଲାକାର ବା ଆୟତକାର ମଞ୍ଚ ଓ ମଞ୍ଚ ସଂଲଗ୍ନ ପ୍ରେକ୍ଷାଳୟକୁ ଏକ ଆବଦ୍ଧ ଗୃହ ମଧ୍ୟରେ ସଂସ୍ଥାପିତ କରାଯାଇଥିଲେ ଏହି ମଞ୍ଚକୁ ଆବଦ୍ଧ ନାଟ୍ୟମଞ୍ଚ କୁହାଯାଏ । ଏହି ପ୍ରକାର ମଞ୍ଚର ସ୍ଥାପତ୍ୟ ଅନୁଯାୟୀ କେଉଁଠାରେ ଦର୍ଶକ ମଞ୍ଚର ଚାରିପଟେ ବସନ୍ତି (theatre in round) କୁହାଯାଏ ।

ଦର୍ଶକ ଯେଉଁଠି ଗୋଲାକାରଭାବେ ବସନ୍ତି ତ କେଉଁଠାରେ ମଞ୍ଚର ଗୋଟିଏ ପାର୍ଶ୍ୱରେ ବସିଥାନ୍ତି । ଅଭିନେତା ଅଭିନେତ୍ରୀମାନେ ବାସଗୃହ ପ୍ରଭୃତି ମଞ୍ଚର ଅନ୍ତରାଳରେ ରହିଥାଏ । ଏହିଭଳି ମଞ୍ଚର ଏକ ଚିତ୍ର ଏଠାରେ ଦିଆଗଲା ।



ଚିତ୍ର ୧ : ଗୋଲାକାର ଆବଦ୍ଧ ନାଟ୍ୟମଞ୍ଚ

ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଶ୍ରେଣୀ କୋଠରିକୁ ଏକ ନାଟ୍ୟ ମଞ୍ଚର ଉଦାହରଣ ରୂପେ ଗ୍ରହଣ କଲେ ଶିକ୍ଷାଦାନରତ ପ୍ରତ୍ୟେକ ଶିକ୍ଷକଙ୍କୁ ଜଣେ ଅଭିନେତା ଓ ଛାତ୍ରଛାତ୍ରୀମାନଙ୍କୁ ଜଣେ ଜଣେ ଦର୍ଶକ କୁହାଯାଇ ପାରେ ।



ଚିତ୍ର ୨ : ଏକ ପାର୍ଶ୍ୱ ବିଶିଷ୍ଟ ଆବଦ୍ଧ ନାଟ୍ୟ ମଞ୍ଚ

ମଞ୍ଚସୂଚନା : ଚିତ୍ର ୨ ପ୍ରଦର୍ଶିତ ଏକ ପାର୍ଶ୍ୱ ବିଶିଷ୍ଟ ଆବଦ୍ଧ ନାଟ୍ୟମଞ୍ଚର ବିଭିନ୍ନ ଅଂଶ (ଚିତ୍ରରେ ସଂଖ୍ୟାଦ୍ୱାରା ସୂଚିତ) ସୂଚନା ନିମ୍ନରେ ଦିଆଯାଇଛି ।

୧. ଅଧିରଙ୍ଗ (Apron) : ଯବନିକା (grand curtain) ବାହାରକୁ ଥିବା ମଞ୍ଚର ବୃତ୍ତଖଣ୍ଡାକାର ଅଂଶ ।

୨. ରଙ୍ଗଭୂମି (Acting area) : ମଞ୍ଚର ଅଭିନୟ ସ୍ଥଳୀ ।

୩. ପାର୍ଶ୍ୱରଙ୍ଗ (Wing) : ରଙ୍ଗଭୂମିର ଉଭୟ ପାର୍ଶ୍ୱରେ ଥିବା ସ୍ଥାନ, ଯେଉଁଠାରେ ଅଭିନେତା ଅଭିନେତ୍ରମାନେ ଯଥା ସମୟରେ ରଙ୍ଗଭୂମିକୁ ଆସି ଅଭିନୟ କରିବାକୁ ଅପେକ୍ଷା କରନ୍ତି ।

୪. ମଞ୍ଚ ମୁଖ (Prossinium opening) : ମଞ୍ଚର ଯେଉଁ ଭାଗ ଦର୍ଶକମାନଙ୍କ ଆଡ଼କୁ ଥାଏ ।

୫. ମଞ୍ଚ-ପ୍ରାଚୀର (Prossinium wall) : ମଞ୍ଚ ଅଭ୍ୟନ୍ତର ଓ ଦର୍ଶକ ମଧ୍ୟରେ ଥିବା ଅବରୋଧକ ।

୬. ଅଧିମୁଖ (False Prossinium) : ମଞ୍ଚମୁଖକୁ କ୍ଷୁଦ୍ରକାର କରିବାର ବ୍ୟବସ୍ଥା ।

୭. ପାର୍ଶ୍ୱପଟ (Wings) : ରଙ୍ଗଭୂମିର ନେପଥ୍ୟରେ ଘଟୁଥିବା କାର୍ଯ୍ୟକ୍ରମକୁ ଦର୍ଶକଙ୍କ ଦୃଷ୍ଟିର ଆଢୁଆଳରେ ରଖିବା ଲାଗି ପାର୍ଶ୍ୱ ରଙ୍ଗଠାରେ ଥିବା କଳା ଓ ଗାଢ଼ ନୀଳ ରଙ୍ଗର ପରଦା ।

୮. ଝାଲର (Border) : ରଙ୍ଗରଭୂମିର ଉର୍ଦ୍ଧ୍ୱରେ ଥିବା ଗାଢ଼ ନୀଳ ରଙ୍ଗର ପରଦା ।

୯. ମୁଖପଟ (Treaser) : ମଞ୍ଚ ମୁଖର ଉର୍ଦ୍ଧ୍ୱକୁ ଥିବା ପରଦା ।

୧୦. ଗଳିପଥ (Trap way) : ରଙ୍ଗଭୂମିରୁ ପାର୍ଶ୍ୱରଙ୍ଗକୁ ଥିବା ସୁଡ଼ଙ୍ଗ ପଥ । ଏହି ପଥ ସାହାଯ୍ୟରେ ରଙ୍ଗଭୂମିରୁ ଭୂତଳକୁ ଗଳିଯିବା, ଅଗ୍ନି କୁଣ୍ଡରେ ଝାସଦେବା, ଭୁତ ପ୍ରେତ ବାହାରିବା ଆଦି ଆଶ୍ଚର୍ଯ୍ୟଜନକ ଦୃଶ୍ୟ ସୃଷ୍ଟି କରାଯାଇଥାଏ ।

୧୧. ବଳୟପଟ (Cycloroma) : ରଙ୍ଗଭୂମିର ଶେଷଭାଗକୁ ଏକ ସ୍ୱଚ୍ଛ ପରଦା । ଏହାର ପଛପାଖରେ ଛାୟା-ଆଲୋକର କୌଶଳଦ୍ୱାରା, ଭାସମାନ ମେଘ, ସୂର୍ଯ୍ୟୋଦୟ, ଚଳମାନ ଟ୍ରେନ୍, ବହମାନ ନଦୀର ଦୃଶ୍ୟ ସୃଷ୍ଟି କରାଯାଇପାରେ ।

୧୨. ଦର୍ଶକଙ୍କ ବସିବାସ୍ଥାନ ।

୧୩. - ୧୪. ଆଲୋକ ଓ ଧ୍ୱନି ନିୟନ୍ତ୍ରଣ ସ୍ଥାନ ।

୧୫. ସାଜଗୃହ ।

୧୬. ସଙ୍ଗୀତ ଶିଳ୍ପୀମାନଙ୍କର ବସିବା ସ୍ଥାନ ।

**ମୁକ୍ତାକାଶ ନାଟ୍ୟମଞ୍ଚ :**

ଖୋଲା ଆକାଶ ତଳେ ଅସ୍ଥାୟୀ ବା ସ୍ଥାୟୀ ଭାବେ ସ୍ଥାପିତ ଗୋଲାକାର, ଆୟତକାର ବା ଅନ୍ୟ କୌଣସି ଆକୃତି ବଶିଷ୍ଟ ମଞ୍ଚକୁ ମୁକ୍ତାକାଶ ମଞ୍ଚ କୁହାଯାଇଥାଏ ।

ସାଧାରଣତଃ ଆମର ପାରମ୍ପରିକ ଯାତ୍ରା, ପାଲା, ଲୀଳା ଆଦିର ନାଟ୍ୟ ପ୍ରଯୋଜନା ଲାଗି ଏହିଭଳି ଅସ୍ଥାୟୀ ମୁକ୍ତକାଶ ମଞ୍ଚ ନିର୍ମାଣ କରାଯାଇଥାଏ । ଏହି ମଞ୍ଚର ଚାରିପଟରେ, ସମୟ ସମୟରେ ତିନି ପଟରେ ଦର୍ଶକମାନେ ମଞ୍ଚର ଆକୃତି ଅନୁଯାୟୀ ଆସନ ଗ୍ରହଣ କରିଥାନ୍ତି ।ଏହି ନାଟ୍ୟମଞ୍ଚରେ ପ୍ରଯୋଜିତ ନାଟକର ସଙ୍ଗୀତକାର (musicians), ସ୍ମାରକ (Promotor) ଆଦି ମଞ୍ଚ ସଂଲଗ୍ନ ହୋଇ ଦର୍ଶକମାନଙ୍କର ଏକ ଅଂଶବିଶେଷ ଭଳି ମଞ୍ଚର ଏକପଟେ ବା ତିନିପଟେ ଆସନ ଗ୍ରହଣ କରିଥାନ୍ତି । ମଞ୍ଚକୁ ଅଭିନେତାମାନଙ୍କର ଗମନାଗମନ ପାଇଁ ଦର୍ଶକ ମଧ୍ୟ ଦେଇ ଏକ ସରୁ ରାସ୍ତା ଥାଏ । ତାହାକୁ ପୁଷ୍ପପଥ କୁହାଯାଏ ଓ ମଞ୍ଚର ଅନତିଦୂରରେ କୌଣସି ଏକ ସ୍ଥାନରେ ସାଜଘର (Make-up-room) ଥାଏ । ଏହି ମଞ୍ଚରେ ଦର୍ଶକମାନଙ୍କର ସଂଖ୍ୟା ନିର୍ଦ୍ଦିଷ୍ଟ କରାଯାଇ ନଥିବାରୁ ଏଭଳି ନାଟ୍ୟ ମଣ୍ଡପରେ ପ୍ରଚୁର ଜନସମାଗମ ହୋଇଥାଏ । ଶେଷ ଧାଡିରେ ବସିଥିବା ଦର୍ଶକମାନେ ଯେପରି ନାଟକକୁ ଠିକ୍ ଭାବେ ଦେଖିପାରିବେ ସେଥିଲାଗି ମଞ୍ଚକୁ ଦର୍ଶକଙ୍କ ବସିବା ସ୍ଥଳଠାରୁ ଯଥେଷ୍ଟ ଉଚ୍ଚ କରାଯାଇଥାଏ ।

**ଅଭିନୟ :**

ନାଟକର ସଫଳତା ନିର୍ଭର କରେ ଅଭିନୟର ସଫଳତା ଉପରେ । ନାଟ୍ୟଶାସ୍ତ୍ର ଅନୁସାରେ ଅଭିନୟ ଚାରିପ୍ରକାର : **ଆଙ୍ଗିକ ଅଭିନୟ, ବାଚିକ ଅଭିନୟ, ସାତ୍ତ୍ୱିକ ଅଭିନୟ** ଏବଂ **ଆହାର୍ଯ୍ୟ ଅଭିନୟ** ।

ନାଟକ ଅନ୍ତର୍ଭୁକ୍ତ ଚରିତ୍ରର ଚିନ୍ତା ଓ ମନୋଭାବର ପରିପ୍ରକାଶ ପାଇଁ ଅଭିନେତା ଅଙ୍ଗ ପ୍ରତ୍ୟଙ୍ଗ ଓ ଉପାଙ୍ଗର ଯେଉଁସବୁ ସୁସଂଯତ ସଞ୍ଚାଳନ କରେ ତାହାକୁ ଆଙ୍ଗିକ ଅଭିନୟ କୁହାଯାଏ । ସେହିପରି ବିଭିନ୍ନ ଭାବର ଅଭିବ୍ୟକ୍ତି ନିମନ୍ତେ କଣ୍ଠସ୍ୱରର

ଆବେଗମୟ ପ୍ରକାଶ ହିଁ ବାଚିକ ଅଭିନୟ । ପୁଣି ଚରିତ୍ରର ବିଭିନ୍ନ ମାନସିକ କ୍ରିୟା, ପ୍ରତିକ୍ରିୟାର ଅବସ୍ଥା ଓ ବିଭିନ୍ନ ଭାବ, ରସର ଅଭିବ୍ୟକ୍ତି ବୁଝାଇବା ପାଇଁ ଯେଉଁ ଅଭିନୟ କରାଯାଏ ତାହାକୁ ସାତ୍ତ୍ୱିକ ଅଭିନୟ କୁହାଯାଏ । ଉପରୋକ୍ତ ତିନିପ୍ରକାର ଅଭିନୟ, ଅଭିନେତା ନିଜେ କରୁଥିବା ବେଳେ ଆହାର୍ଯ୍ୟ ଅଭିନୟ ମଞ୍ଚର ନେପଥ୍ୟ ଶିଳ୍ପୀମାନଙ୍କଦ୍ୱାରା ସଂଘଟିତ ହୋଇଥାଏ । ଏହି ନେପଥ୍ୟ ଶିଳ୍ପୀମାନେ ହେଲେ, ବେଶ ସଜ୍ଜାକାରୀ, ରୂପ ସଜ୍ଜାକାରୀ, ଆଲୋକ, ଶବ୍ଦ ଓ ମଞ୍ଚଶିଳ୍ପୀ ।

## ମୂକାଭିନୟ :

ଆଧୁନିକ ନାଟ୍ୟ ଜଗତରେ ମୂକାଭିନୟର ଏକ ବିଶେଷ ସ୍ଥାନ ରହିଛି । ମୂକାଭିନୟରେ ଅଭିନେତାର ବାଚନିକ କ୍ରିୟାର ପ୍ରୟୋଗ ହୁଏନାହିଁ ସତ୍ୟ, ମାତ୍ର ତାହାର ସମସ୍ତ ଶାରୀରିକ, ମାନସିକ ଅନୁଭୂତି ଓ ପ୍ରତିକ୍ରିୟା ତା'ର ଚଳିଚଳନ, ଭାବଭଙ୍ଗୀ ଏପରିକି ମନନ, ଚିନ୍ତନ ଶବ୍ଦହୀନ ଅଭିନୟ ମାଧ୍ୟମରେ ପ୍ରଦର୍ଶିତ ହୋଇ ଦର୍ଶକର ହୃଦୟକୁ ଛୁଇଁପାରେ ।

ମୂକାଭିନୟର ଅଭିନେତା ଶାରିରୀକ ଓ ମାନସିକ ଭାବେ ସାଧାରଣ ଅଭିନେତାଙ୍କଠାରୁ ଅଧିକ ସୁସଂଯତ ହେବା ଆବଶ୍ୟକ । କାରଣ, ତାଙ୍କର ଚଳିଚଳନ ଓ ପ୍ରତିକ୍ରିୟାରେ ପରିଲକ୍ଷିତ ସାମାନ୍ୟ ତ୍ରୁଟି ବିଚ୍ୟୁତି ଦର୍ଶକଙ୍କୁ ସନ୍ଦେହରେ ପକାଇ ଦେଇପାରେ । ଏଣୁ ଅଭିନେତାର ଅନୁଭୂତି ଓ ପ୍ରତିକ୍ରିୟା, ଅଙ୍ଗଭଙ୍ଗୀ ଓ ବ୍ୟବହାର, ମାର୍ଜିତ, ସ୍ୱଚ୍ଛ ଓ ଆବଶ୍ୟକତାନୁଯାୟୀ ହେବା ବାଞ୍ଛନୀୟ ।

ମୂକାଭିନେତାର ପୋଷାକ ଧଳା ହେଲେ ମଞ୍ଚର ପଶ୍ଚାଦ୍‌ପଟ ନୀଳ ବା କଳା ହେବା ଦରକାର । ଅଭିନେତାର ପୋଷାକ ନୀଳ ବା କଳା ରଙ୍ଗର ହୋଇଥିଲେ ମଞ୍ଚର ପଶ୍ଚାଦ୍‌ପଟ ଧଳା ବା ଧୂସର ହେବା ବାଞ୍ଛନୀୟ । ଏହା ଫଳରେ ଅଭିନେତାର ଅବୟବ ପରିଷ୍କାର ଭାବେ ଦର୍ଶକଙ୍କ ଦୃଷ୍ଟିଗୋଚର ହୋଇଥାଏ । ପ୍ରୟୋଜନ ସ୍ଥଳେ ଅଭିନେତା ଧଳା ବା କଳା ରଙ୍ଗର ନାଗରା ଜୋତା ବା କେବଳ ସେହି ରଙ୍ଗର ମୋଜା ବ୍ୟବହାର କରିପାରନ୍ତି ।

ମୂକାଭିନେତାର ପ୍ରସାଧନ (make-up) ଏକ ବିଶେଷ ରୀତିରେ ହେବା ଉଚିତ୍ । ଭ୍ରୁ ଦୁଇଟିକୁ ଯଥେଷ୍ଟ ବଡ, ଆଖିକୁ ସେହି ଅନୁସାରେ ଲମ୍ବା ଓ ବଡ ତଥା ଓଠକୁ ମୋଟା କରାଯିବା ଦରକାର । ସାଧାରଣତଃ ମୂକାଭିନେତାର ମୁଖମଣ୍ଡଳ ଏକ ମୁଖାଭଳି ଚିତ୍ରିତ ହୋଇଥାଏ । ଫଳରେ ସେହି ମୁଖମଣ୍ଡଳ ବହୁଦୂର ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇଥାଏ ।

ମୂକାଭିନୟରେ ଅଧିକ ଆବେଗ ସୃଷ୍ଟି କରିବା ପାଇଁ ଓ ଏହାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଆଲୋକ ସଜ୍ଜାରେ ବିଭିନ୍ନ ରଙ୍ଗର ବ୍ୟବହାର କରାଯାଇଥାଏ । ଅନେକ ନିଜର ରୁଚି ଅନୁଯାୟୀ ଆବହ ସଙ୍ଗୀତ, ତଥା ବିଭିନ୍ନ ପାରିପାର୍ଶ୍ୱିକ ଧ୍ୱନିର ପ୍ରୟୋଗ ମଧ୍ୟ କରାଇଥାଆନ୍ତି ।

## ଅଭିନେତାର ଆବଶ୍ୟକୀୟ ପ୍ରସ୍ତୁତି :

ଆପଣାର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତିର ଭାବନାକୁ ଯେଉଁ ଅଭିନେତା ନିଜର ଅଙ୍ଗଭଙ୍ଗୀ ଓ କଣ୍ଠସ୍ୱର ମାଧ୍ୟମରେ ଅଧିକ ସହଜ ଭାବେ ବୋଧଗମ୍ୟ ହେଲା ଭଳି ସାବଲୀଳ ଓ ସ୍ୱଚ୍ଛନ୍ଦରେ ପରିପ୍ରକାଶ କରିପାରେ ସେ ହିଁ ଜଣେ ସଫଳ ଅଭିନେତାଭାବେ ଜନସ୍ୱୀକୃତି ଲାଭ କରିଥାଏ । ସାଧାରଣତଃ ପ୍ରତ୍ୟେକ ସଫଳ, ଛାତ୍ରପ୍ରିୟ ସାହିତ୍ୟ ଶିକ୍ଷକ ଜଣେ ଜଣେ ସଫଳ ଅଭିନେତା । ଏପରି ଶିକ୍ଷକ ନିଜର ପ୍ରତ୍ୟେକ ସାହିତ୍ୟ ପାଠ୍ୟକୁ ଅଭିନୟର ପୃଷ୍ଠଭୂମି ଭାବେ ଗ୍ରହଣ କରି ନିଜକୁ ପାଠ୍ୟବିଷୟର ଏକାଧିକ ଚରିତ୍ରରେ ରୂପାୟିତ କରିପାରନ୍ତି । ସେହିଭଳି ପ୍ରତ୍ୟେକ ମଞ୍ଚ ଅଭିନେତାକୁ ପ୍ରତିଷ୍ଠିତ ହେବାକୁ ହେଲେ, ନିଜର ଅଙ୍ଗ, କଣ୍ଠସ୍ୱର ଏବଂ ମନକୁ ନିୟନ୍ତ୍ରଣାଧୀନ କରିବା ନିତାନ୍ତ ପ୍ରୟୋଜନ । ଏହି କ୍ଷମତା ଲାଭ କରିପାରିଲେ ଅଭିନେତା ନିଜର ଇଚ୍ଛାନୁଯାୟୀ ନିଜକୁ ବିଭିନ୍ନ ଚରିତ୍ର ମାଧ୍ୟମରେ ପ୍ରକାଶ କରିପାରିବେ ।

ଶରୀରରେ ନମନୀୟତା ଆଣିବା ପାଇଁ ଅଭିନେତାକୁ ନିୟମିତ ଭାବେ ନାନାପ୍ରକାର ବ୍ୟାୟାମ ଓ ନୃତ୍ୟାଭ୍ୟାସ କରିବାକୁ ପଡିଥାଏ । ବିଭିନ୍ନ ଅଙ୍ଗଭଙ୍ଗୀକୁ ଆୟତ୍ତାଧୀନ କରିବା ପାଇଁ ଅଭିନେତାକୁ ବିଭିନ୍ନ ଭାବେ ଚାଲିବା, ବସିବା, ଛିଡାହେବା, ବୁଲିପଡିବା, ହାମୁଡେଇବା, ପଡିଯିବା, ଦୌଡିବା, ପ୍ରବେଶ ତଥା ପ୍ରସ୍ଥାନ କରିବାର ବିଭିନ୍ନ କୌଶଳରେ ନିୟମିତ ଅଭ୍ୟାସ କରିବାକୁ ପଡେ । ସେହିପରି ନିଜର ସମସ୍ତ ଚିନ୍ତା, ଭାବନା ଓ ଅନୁଭୂତିର ପରିପ୍ରକାଶ ପାଇଁ ନିଜର ମୁଖଭଙ୍ଗୀର ସଠିକ୍ ପ୍ରୟୋଗ ମଧ୍ୟ ସେ ଅଭ୍ୟାସ କରେ । କାରଣ ମୁଖଭଙ୍ଗୀ ମାଧ୍ୟମରେ ହିଁ ଅଭିନେତା ହସ, କାନ୍ଦ, ଭୟ, ପ୍ରେମ ଆଦି ବିଭିନ୍ନ ଭାବ ଓ ରସର ପରିବେଷଣ କରିଥାଏ । ମୁଖମଣ୍ଡଳର ସମସ୍ତ ମାଂସପେଶୀର ନିୟମିତ ସଙ୍କୋଚନ- ପ୍ରସାରଣ ଦ୍ୱାରା ସେଗୁଡିକୁ ନମନୀୟ ଏବଂ ଭାବବ୍ୟଞ୍ଜକ କରାଯାଇପାରେ । ସେହିପରି କଣ୍ଠସ୍ୱରର ଉତ୍‌ଥାନ ପତନ ଅଭ୍ୟାସ କରିବା ସଙ୍ଗେ ସଙ୍ଗେ ନିୟମିତ ଭାବେ ଶୁଦ୍ଧ ଉଚ୍ଚାରଣ ଅଭ୍ୟାସ କରିବା ମଧ୍ୟ ପ୍ରୟୋଜନ । ଏତଦ୍ ବ୍ୟତୀତ ନିୟମିତ ଅଭ୍ୟାସଦ୍ୱାରା ଭିନ୍ନ ଭିନ୍ନ ଭାବରେ ହସିବା, କାନ୍ଦିବା, ଚିତ୍କାର କରିବା, ଚୁପ୍ ଚୁପ୍ କଥା ହେବା, ଭିନ୍ନ ଭିନ୍ନ କଣ୍ଠସ୍ୱରରେ କଥା ହେବାର ଦକ୍ଷତା ମଧ୍ୟ ହାସଲ କରାଯାଇପାରେ ।

# ଦୃଶ୍ୟସଜ୍ଜା

## ନେପଥ୍ୟ :

ଆଧୁନିକ ନାଟ୍ୟ ପ୍ରଯୋଜନାରେ ନେପଥ୍ୟ କର୍ମର ଏକ ବିଶେଷ ସ୍ଥାନ ରହିଅଛି । ଏହି ନେପଥ୍ୟ କର୍ମକୁ ସାଧାରଣତଃ ଚାରି ଭାଗରେ ବିଭକ୍ତ କରାଯାଇଥାଏ; ଯଥା : ଦୃଶ୍ୟସଜ୍ଜା ପରିକଳ୍ପନା (Scenic design) ପୋଷାକ ପରିଚ୍ଛଦ ଓ ଅଳଙ୍କାର (costume & ornaments) ପ୍ରସାଧାନ (make-up) ଏବଂ ଆଲୋକ ଓ ଶବ୍ଦ (light & sound) ପରିକଳ୍ପନା ।

## ଦୃଶ୍ୟସଜ୍ଜା :

କୌଣସି ଏକ ନାଟ୍ୟାଭିନୟ ପାଇଁ ନାଟକର କଥାବସ୍ତୁର ଆବଶ୍ୟକତା ଅନୁଯାୟୀ ଏକ କୃତ୍ରିମ ପରିବେଶ ସୃଷ୍ଟି କରାଯାଇଥାଏ । ଏହାକୁ ଦୃଶ୍ୟସଜ୍ଜା କହନ୍ତି । ଏହି ଦୃଶ୍ୟସଜ୍ଜା ଦର୍ଶକମାନଙ୍କୁ ନାଟକରେ ବର୍ଣ୍ଣିତ ସ୍ଥାନ, କାଳ ଓ ପାତ୍ରମାନଙ୍କ ବିଷୟରେ ଧାରଣା ଦେଇଥାଏ । ଅର୍ଥାତ୍ ରଙ୍ଗମଞ୍ଚର ଯବନିକା ଉଠିଯିବା ମାତ୍ରେ ଦର୍ଶକ ନିଜ ସମ୍ମୁଖରେ ଉଦ୍‌ଭାସିତ ଦୃଶ୍ୟପଟକୁ ଦେଖି ସଙ୍ଗେ ସଙ୍ଗେ ନାଟକର ପୃଷ୍ଠଭୂମିର ପରିଚୟ (ଘର, ନଦୀ, ମଶାଣି କିମ୍ବା ଜଙ୍ଗଲ ଆଦି), ନାଟକର ଯୁଗ (ପୌରାଣିକ, ଐତିହାସିକ, ଆଧୁନିକ) ଓ ନାଟକର ଚରିତ୍ର (ରାଜା, ଧନୀ, ନିର୍ଦ୍ଧନ, କିରାଣୀ, ଲେଖକ ଚିତ୍ରକର ଆଦି) ସମ୍ପର୍କରେ ସ୍ୱଷ୍ଟ ଧାରଣା ଲାଭ କରିଥାଏ ।

ମଞ୍ଚସଜ୍ଜାପାଇଁ ବିଭିନ୍ନ ରୀତି (style) ର ପ୍ରଚଳନ ଅଛି । ତନ୍ମଧ୍ୟରୁ **ବାସ୍ତବାନୁରୂପ (Realistic), ଇଙ୍ଗିତଧର୍ମୀ (Suggestive), ବିନ୍ୟାସଧର୍ମୀ (Informal), ପ୍ରତୀକଧର୍ମୀ (Symbolic), ରୂପକଧର୍ମୀ** (Allegoric) ଆଦି ପ୍ରଧାନ । ନିମ୍ନରେ ଏହିସବୁ ରୀତିର ବିଶ୍ଳେଷଣ ଓ ଉଦାହରଣ ଦିଆଗଲା ।

**(୧) ବାସ୍ତବାନୁରୂପ ଦୃଶ୍ୟସଜ୍ଜା** (Realistic Set) - ଯେଉଁ ଦୃଶ୍ୟ ଦେଖି ଦର୍ଶକଙ୍କ ମନରେ ପ୍ରକୃତ ସ୍ଥାନର ଅବିକଳ ଅନୁଭୂତି ଜାତ ହୁଏ ତାହାକୁ ହିଁ **ବାସ୍ତବାନୁରୂପ ଦୃଶ୍ୟସଜ୍ଜା** କହନ୍ତି । ଉଦାହରଣ ସ୍ୱରୂପ ଏକ କୁଡିଆଘର ଦେଖାଇବାକୁ ହେଲେ ମଞ୍ଚରେ ଝାଟିମାଟିର ଏକ ଘର ତିଆରି କରି ନଡା ଛପର କରି କବାଟ ଝରକା ପ୍ରଭୃତି ଲଗାଇଲେ ତାହା ହିଁ ବାସ୍ତବାନୁରୂପ ଦୃଶ୍ୟ ସଜ୍ଜା ସୃଷ୍ଟିକରେ । ଏହାର କବାଟ କନାରେ ବା ଝାଟ ମାଟି ବାଉଁଶ କଣିରେ ଏବଂ ୨/୩ ବିଡା ନଡାର ଏକ ତାଟି କରି ଛପର ଭାବେ ବ୍ୟବହାର କରାଯାଇପାରେ ।

(୨) ଇଙ୍ଗିତ ଧର୍ମୀ (Suggestive) - ମଞ୍ଚରେ ସମ୍ପୂର୍ଣ୍ଣ ଘରଟିଏ ନିର୍ମାଣ ନ କରି କେବଳ ଘରର ଦରଜାର ଏକ ଫ୍ରେମ୍ ଲଗାଇ ତା'ରି ମଧଦେଇ ଅଭିନେତାମାନେ ଯିବା ଆସିବା କଲେ ତାହା ହିଁ ଏକ ଗୃହର ଇଙ୍ଗିତ ଦେଇଥାଏ । ଏଭଳି ଦୃଶ୍ୟସଜ୍ଜାକୁ ଇଙ୍ଗିତ ଧର୍ମୀ ଦୃଶ୍ୟସଜ୍ଜା କୁହାଯାଏ ।

(୩) ପ୍ରତୀକ ଧର୍ମୀ (Symbollic) ଏଭଳି ଦୃଶ୍ୟସଜ୍ଜାରେ କୌଣସି ଏକ ଅନ୍ତର୍ନିହିତ ଚେତନାକୁ ଅନ୍ୟ ଏକ ମାଧମ ଦେଇ ପ୍ରକାଶ କରାଯାଇଥାଏ , ଯଥା : ମଞ୍ଚର ଏକ ବିରାଟ ପ୍ରଜାପତି ଆକୃତିର ଦୃଶ୍ୟ ସଜ୍ଜା କରି ତାହାକୁ ପ୍ରେମର ଭାବନା ବ୍ୟକ୍ତ କରିବାର ଉପାଦାନ ରୂପେ ଗଣାଯାଇପାରେ, କାରଣ ପ୍ରଜାପତି ହିଁ ପ୍ରେମର ପ୍ରତୀକ । ସେହିପରି ନ୍ୟାୟର ପ୍ରତୀକ ଭାବେ ତରାଜୁର ପ୍ରତିରୂପ ମଞ୍ଚରେ ଦର୍ଶାଇ ଦିଆଯାଇପାରେ । ସେହିପରି ନାଲି ରଙ୍ଗର ଛକ + ଚିହ୍ନକୁ ଡାକ୍ତରଖାନା, ନାଲିତ୍ରିକୋଣକୁ ପରିବାର କଲ୍ୟାଣ ଯୋଜନାର ପ୍ରତୀକ ଭାବେ ବ୍ୟବହାର କରାଯାଇପାରେ ।

(୪) ବିନ୍ୟାସ ଧର୍ମୀ (Formal) - କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନ ବା ଘଟଣାର ପରିକଳ୍ପନା ନ କରି କେବଳ କେତୋଟି ଆୟତାକାର, ବର୍ଗାକାର, ଗୋଲାକାର ଆକୃତିର ବିଭିନ୍ନ ବେଦୀ ଓ ପାହାଚର ସମନ୍ୱୟରେ ଦୃଶ୍ୟ ସଜ୍ଜା କରାଗଲେ ଏହାକୁ ବିନ୍ୟାସ ଧର୍ମୀ ଦୃଶ୍ୟସଜ୍ଜା କୁହାଯାଏ । ଏହି ଦୃଶ୍ୟ ସଜ୍ଜାର ପଶ୍ଚଦ୍‌ପଟରେ ଧଳା, ନୀଳ ବା କଳାରଙ୍ଗର ପରଦା ବ୍ୟବହାର କରି ଉକ୍ତ ଦୃଶ୍ୟସଜ୍ଜାକୁ ନାଟକର ସମସ୍ତ ଦୃଶ୍ୟପାଇଁ ବ୍ୟବହାର କରାଯାଇପାରେ । ଉଦାହରଣ ସ୍ୱରୂପ ଏକ ଦୃଶ୍ୟରେ ବେଦୀ ଉପରେ ଶିକ୍ଷକ ବସିଥିବାର ଦେଖାଗଲା । ସେହି ଦୃଶ୍ୟପାଇଁ ବେଦୀଟି ଚେୟାର ଭାବରେ ବ୍ୟବହୃତ ହେଲା, ପରବର୍ତ୍ତୀ ଦୃଶ୍ୟରେ ସେହି ବେଦୀ ଉପରେ ଯଦି ଛାତ୍ର ବା କୌଣସି ଚରିତ୍ର ଲମ୍ବ ହୋଇ ଶୋଇ ପଡିଥିବାର ଦେଖାଯାଏ, ତା'ହେଲେ ସେହି ସମୟରେ ସେହି ବେଦୀଟି ଖଟ ବା ବେଞ୍ଚ ଭାବରେ ବ୍ୟବହୃତ ହେଲା ବୋଲି ପ୍ରତୀୟମାନ ହୁଏ । ଏହିଭଳି ଭାବରେ ନିର୍ଦ୍ଦେଶକ ଇଚ୍ଛାକଲେ ସେହି ଏକମାତ୍ର ବେଦୀକୁ ପ୍ରୟୋଗ - ବୈଚିତ୍ର୍ୟଦ୍ୱାରା କେତେବେଳେ ରାଜାଙ୍କର ସିଂହାସନ, କେତେବେଳେ ସନ୍ନ୍ୟାସୀର ପଥରବେଦୀ ବା କେତେବେଳେ ଦରିଦ୍ର ଘରର ଠାକୁର ଖଟୁଲି ଭାବେ ବ୍ୟବହାର କରିପାରିନ୍ତି । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ପଶ୍ଚାଦ୍‌ପଟକୁ ବାଦ୍‌ଦେଇ ଏହିଭଳି ଦୃଶ୍ୟସଜ୍ଜା ଆଧୁନିକ ଯୁଗର ଯାତ୍ରା ନାଟକରେ ବହୁଳଭାବେ ପ୍ରୟୋଗ କରାଯାଇଥାଏ ।

(୫) ରୂପକଧର୍ମୀ ଦୃଶ୍ୟସଜ୍ଜା (Allegoric Set) -ରୂପକ ଧର୍ମୀ ଦୃଶ୍ୟ ସଜ୍ଜା ପରିକଳ୍ପନାରେ ବାସ୍ତବିକତାକୁ ବାଦ୍‌ଦେଇ ରୂପକଥା ବା କାହାଣୀରେ ଥିବା କଳ୍ପନା ରାଜ୍ୟର ପରିବେଶ ସୃଷ୍ଟି କରାଯାଏ । ଯଥା : ସ୍ୱର୍ଗପୁରୀ, ପାତାଳପୁରୀ, ଯମପୁରୀ, ଡାହାଣୀବୁଢୀର ଦେଶ, କାଉଁରୀ ଦେଶ, ଚନ୍ଦ୍ରଦେଶ ଇତ୍ୟାଦି ।

## ଦୃଶ୍ୟସଜ୍ଜାରେ ରଙ୍ଗର ପ୍ରୟୋଗ :

ବିଭିନ୍ନ ପ୍ରକାର ଦୃଶ୍ୟସଜ୍ଜା ନିର୍ମାଣ କରି ସେଥିରେ ଆବଶ୍ୟକତାନୁସାରେ ରଙ୍ଗ ଲଗାଇବାକୁ ପଡେ । ଏହି ରଙ୍ଗ ଅସ୍ୱଚ୍ଛ ହୋଇଥିବାରୁ ଏହାର ମୌଳିକ ଓ ଯୌଗିକ ବର୍ଣ୍ଣଚକ୍ର ସ୍ୱଚ୍ଛବର୍ଣ୍ଣଚକ୍ରଠାରୁ ଭିନ୍ନ । ଅସ୍ୱଚ୍ଛ ଧୂସର ରଙ୍ଗକୁ ପ୍ରଭାବହୀନ ରଙ୍ଗ (Neutral Colur) ଭାବେ ବର୍ଣ୍ଣନା କରାଯାଇଥିଲା ବେଳେ ନାଲି, ହଳଦୀ ଓ ନୀଳକୁ ମୌଳିକ ରଙ୍ଗ ଓ କମଳା, ସବୁଜ, ବାଇଗଣିକୁ ଯୌଗିକ ରଙ୍ଗ ଭାବେ ବର୍ଣ୍ଣନା କରାଯାଇଛି ।

ଧଳା ରଙ୍ଗ ପାଇଁ Zink oxide, ହଳଦୀ ରଙ୍ଗ ପାଇଁ ପିହୁଡି, ନୀଳରଙ୍ଗ ପାଇଁ Robin Blue, ମାଟିଆ ରଙ୍ଗ ପାଇଁ କାଇମାଟି, ସବୁଜ ରଙ୍ଗ ପାଇଁ Green oxide ଏବଂ କଳାରଙ୍ଗ ପାଇଁ ଭୁଷି-କଳା ବ୍ୟବହାର କରାଯାଇଥାଏ । ଏକାଧିକ ରଙ୍ଗ ମିଶ୍ରଣରେ ବିଭିନ୍ନ ପ୍ରୟୋଜନୀୟ ରଙ୍ଗ ମଧ୍ୟ ସୃଷ୍ଟି କରାଯାଇପାରେ ।

## ଆନୁସଙ୍ଗିକ ଉପକରଣ:

ନାଟକରେ ବ୍ୟବହୃତ ସମସ୍ତ ଆନୁଷଙ୍ଗିକ ଉପକରଣକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ, ଯଥା : **ମଞ୍ଚୋପକରଣ** (Stage Property) ଓ ଚରିତ୍ରମାନଙ୍କର **ହସ୍ତୋପକରଣ** (Hand Property)

**(କ) ମଞ୍ଚୋପକରଣ :** କୌଣସି ଏକ ଦୃଶ୍ୟରେ ଚରିତ୍ରର ମଞ୍ଚପ୍ରବେଶ ପୂର୍ବରୁ ମଞ୍ଚରେ ଯେଉଁସବୁ ଉପକରଣ ବା ବସ୍ତୁ ସଜ୍ଜିତ ହୋଇ ରହିଥାଏ, ତାହାକୁ ମଞ୍ଚୋପକରଣ କୁହାଯାଏ ଯଥା: ଟେବୁଲ, ଚେୟାର, ଟେବୁଲ୍ ଲ୍ୟାମ୍ପ, ବହି, କଲମ, ଖଟ, ଟେଲିଫୋନ୍ ଇତ୍ୟାଦି ।

**(ଖ) ହସ୍ତୋପକରଣ :** ସେହିପରି କୌଣସି ଏକ ଦୃଶ୍ୟରେ ଚରିତ୍ର ନିଜେ ବ୍ୟବହାର କରୁଥିବା ସମସ୍ତ ସାମଗ୍ରୀକୁ ଚରିତ୍ରର ହସ୍ତୋପକରଣ କୁହାଯାଏ । ମନେକର ଜଣେ ଚରିତ୍ର ହାତରେ ବଙ୍କୁଲି ବାଡି ବା ଆଟାଚି କିମ୍ବା ବହି ଖଣ୍ଡେ ଧରି ମଞ୍ଚରେ ପ୍ରବେଶ

କଲେ ଏବଂ ମଞ୍ଚରେ ପ୍ରବେଶ କରିବା ପରେ ପକେଟରୁ ଏକ ଟଙ୍କାର ନୋଟବିଡା କିମ୍ବା ଚିଠିଟିଏ ବାହାର କରି ଅନ୍ୟ ଏକ ଚରିତ୍ରକୁ ଦିଏ, ଏଭଳି କ୍ଷେତ୍ରରେ ବଙ୍କୁଲି ବାଡି, ଆଟାଚି, ବହି, ଟଙ୍କା କିମ୍ବା ଚିଠି ସମସ୍ତ ଚରିତ୍ରର ହସ୍ତୋପକରଣ ।

## ବିଦ୍ୟାଳୟରେ ମଞ୍ଚସ୍ଥ ନାଟକର ଦୃଶ୍ୟସଜ୍ଜା :

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପୂର୍ବୋକ୍ତ ଦୃଶ୍ୟସଜ୍ଜା ପଦ୍ଧତି ବ୍ୟୟସାପେକ୍ଷ ହୋଇଥିବାରୁ ସ୍କୁଲମାନଙ୍କରେ ସହଜରେ ମିଳିପାରୁଥିବା ବସ୍ତୁକୁ ନେଇ ଦୃଶ୍ୟସଜ୍ଜା କରାଯାଇପାରେ । ଯଥା : ଗୋଟିଏ ଷ୍ଟୁଲକୁ ବିଭିନ୍ନ ଦୃଶ୍ୟରେ କେତେବେଳେ ରାଜାଙ୍କର ସିଂହାସନ, କେତେବେଳେ ଋଷିଙ୍କ ବେଦୀ, କେତେବେଳେକ ଋଷିଙ୍କର ଘର ଆଗରେ ପଡିଥିବା କାଠଖଣ୍ଡ ଭାବେ ବ୍ୟବହାର କରାଯଇପାରେ । ସେହିପରି ବିଭିନ୍ନ ଦୃଶ୍ୟକୁ ସଜାଇବାରେ ବାଉଁଶ କଣି, କାଉଁରିଆ କାଠି, ନଡିଆ ପତ୍ର, ତାଳବରଡା ଆଦି ମଧ୍ୟ ବ୍ୟବହାର କରାଯାଇପାରେ । ଉଦାହରଣ ସ୍ୱରୂପ ବାଉଁଶ କଣି ବା କାଉଁରିଆ କାଠିକୁ ପାଖା ପାଖି ଛିଡା କରାଇ କୌଣସି ଘରର ଝରିକାନ୍ଥ ଭାବ ଦର୍ଶାଯାଇପାରେ । ସେହିପରି ଜଙ୍ଗଲର ଦୃଶ୍ୟ ପାଇଁ ଏକାଧିକ ଛାତ୍ରଛାତ୍ରୀଙ୍କୁ ବିକ୍ଷିପ୍ତ ଭାବେ ହାତରେ ଛୋଟ ଛୋଟ ଡାଳପତ୍ର ଧରାଇ ମଞ୍ଚରେ ଛିଡା କରାଯାଇପାରେ କିମ୍ବା ସେମାନଙ୍କ ହାତରେ କାଗଜ ବୋର୍ଡରେ ଗଛ ବୋଲି ଲେଖି କିମ୍ବା ସେମାନଙ୍କ ହାତରେ କାଗଜ ବୋର୍ଡରେ ଗଛର ଚିତ୍ର କରି ଧରାଇ ଦିଆଯାଇପାରେ । ଏପରିକି କୌଣସି ବସ୍ତୁର ବ୍ୟବହାର ନ କରି ମଧ୍ୟ ପିଲାମାନଙ୍କ ହାତ ଉପରକୁ କରି ବିଭିନ୍ନ ଭଙ୍ଗୀରେ ଛିଡା କରାଇ ଛୋଟ ଛୋଟ ଗଛ ଭାବେ ବ୍ୟବହାର କରାଯାଇପାରେ । ଏଥି ସହିତ ନେପଥ୍ୟରୁ ଚଢେଇ ବୋବାଇଲା ଭଳି (ଚେଁ ଚଁ) ଏକାଧିକ ସମବେତ ଧ୍ୱନି ସୃଷ୍ଟିକରି ଜଙ୍ଗଲର ପରିବେଶର କଳ୍ପନା କରାଯାଇପାରେ । ସେହିପରି ଫୁଲ ବଗିଚା ଦେଖାଇବା ପାଇଁ ଖଜୁରୀ ଗଛର ଚଅଁରରେ ଭିନ୍ନ ଭିନ୍ନ ଫୁଲ ଖୋସି ପିଲାଙ୍କ ହାତରେ ଧରାଇ ଦିଆଯାଇପାରେ ଏବଂ ଅନ୍ୟ କେତେଜଣ ପିଲାଙ୍କୁ ବିଭିନ୍ନ ପୋଷାକ ଓ ଭଙ୍ଗୀରେ ନୃତ୍ୟ କରି ତା' ଭିତରେ ପ୍ରବେଶ କରାଇ ପ୍ରଜାପତି, ଭ୍ରମର, ଚଢେଇ ଆଦିର ରୂପ ଦିଆଯାଇପାରେ । ସେହିପରି କୁଡିଆ ଘର ଦେଖାଇବା ପାଇଁ କିଛି ପିଲାଙ୍କୁ ସାମ୍ନା ସାମ୍ନି ମୁହଁ କରାଇ ଦୁଇ ଧାଡିରେ ଛିଡା କରାଇ ଦିଆଯାଉ । ସେମାନଙ୍କ ହାତରେ ଛୋଟ ଛୋଟ ବାଡିମାନ ଧରାଇ ମୁହାଁମୁହିଁ ଥିବା ଦୁଇଟି ପିଲାଙ୍କୁ ତାଙ୍କ ହାତରେ ଥିବା ବାଡି ଦୁଇଟିର ଅପର ମୁଣ୍ଡକୁ ଟେକିଧରି ଯୋଡିଦେବାକୁ କୁହାଯାଉ । ବାଡିଦୁଇଟି କୁଡିଆ ଘରର ଦୁଇଟି ଝଲିଆର ରୂପ ଧାରଣ କରିବ । ଏହିପରି ସମସ୍ତ ପିଲାଙ୍କର ବାଡିଗୁଡିକ ଯୋଡି ଯୋଡି ହୋଇ ଧରାଗଲେ କୁଡିଆ ଘରର ଦୃଶ୍ୟ ପରିକଳ୍ପିତ ହେବ ।

ଏହିଭଳି ଅନେକ ଦୃଶ୍ୟକୁ ବିଦ୍ୟାଳୟର ପରିବେଶରେ ବିନା ଖର୍ଚ୍ଚରେ ପରିକଳ୍ପନା କରାଯାଇପାରିବ ।




ଚିତ୍ର ୩ ରଙ୍ଗର ବର୍ଣ୍ଣଚକ୍ର



# ରୂପ ସଜ୍ଜା

## ୧. ପୋଷାକ ଓ ଅଳଙ୍କାର :

କୌଣସି ନାଟକର ଚରିତ୍ରମାନଙ୍କ ପାଇଁ ପୋଷାକ ଓ ଅଳଙ୍କାର ତିଆରି ବା ସଂଗ୍ରହ କରିବାକୁ ଗଲାବେଳେ ପ୍ରଯୋଜକଙ୍କୁ ନିମ୍ନଲିଖିତ ଦିଗଗୁଡ଼ିକ ପ୍ରତି ଦୃଷ୍ଟି ଦେବା ବିଧେୟ - (୧) ନାଟକରେ ବର୍ଣ୍ଣିତ ଯୁଗ (ପୌରାଣିକ, ଐତିହାସିକ ବା ଆଧୁନିକ) (୨) ନାଟ୍ୟ ଘଟଣାର ଭୌଗୋଳିକ ଅବସ୍ଥିତି । ପୋଷାକ ପରିଚ୍ଛଦ ସାଧାରଣତଃ ସ୍ଥାନୀୟ ଜଳବାୟୁ ଉପରେ ନିର୍ଭରଶୀଳ । ସେଇଥିପାଇଁ ରାଜସ୍ଥାନର ପୋଷାକ ଓ ଓଡ଼ିଶାର ପୋଷାକ ପରିଚ୍ଛଦ ସମାନ ନୁହେଁ । (୩) ନାଟକର ବର୍ଣ୍ଣିତ ଚରିତ୍ର (୪) ନାଟକ ବର୍ଣ୍ଣିତ ଘଟଣାର ସାମାଜିକ ଅବସ୍ଥା, ପ୍ରଥା ଏବଂ ପର୍ବପର୍ବାଣୀ ଆଦି ଚରିତ୍ରମାନଙ୍କର ପୋଷାକ ନିରୂପଣ କରିଥାଏ (୫) ଘଟଣାର କାଳ, ଋତୁ ଓ ସମୟ ଅନୁଯାୟୀ ପୋଷାକ ନିର୍ବାଚନ କରାଯାଇଥାଏ । ଗୋଟିଏ ଚରିତ୍ର ଗ୍ରୀଷ୍ମ, ବର୍ଷା ଓ ଶୀତ ଋତୁରେ ଭିନ୍ନ ଭିନ୍ନ ପୋଷାକ ପିନ୍ଧେ । ଦିନରେ ଓ ରାତିରେ ମଧ୍ୟ ସ୍ଥଳ ବିଶେଷରେ ପୋଷାକର ପରିବର୍ତ୍ତନ ଘଟିଥାଏ ।

ପୌରାଣିକ ନାଟକ ପାଇଁ ପୋଷାକ ତିଆରି କଲାବେଳେ କାବ୍ୟ, ମହାକାବ୍ୟ, ଲୋକ ଗାଥା, ପୁରାଣ ଓ ପୁରାତନ ଚିତ୍ରକଳା ଓ ମୂର୍ତ୍ତିକଳାର ବର୍ଣ୍ଣନା ଆଦିର ସାହାଯ୍ୟ ନିଆଯାଇପାରେ ।

ସେହିପରି ଇତିହାସ, ଜୀବନଗାଥା, ଯାଦୁଘର ଆଦିରୁ ସଂଗୃହୀତ ତଥ୍ୟକୁ ଭିତ୍ତିକରି ଐତିହାସିକ ନାଟକର ଚରିତ୍ର ପାଇଁ ପୋଷାକ ତିଆରି କରାଯାଇପାରେ ।

ସାମାଜିକ ନାଟକର ଚରିତ୍ରର ପୋଷାକ ନିର୍ବାଚନ ପାଇଁ ସମାଜର ବିଭିନ୍ନ ଜାତି, ବର୍ଣ୍ଣ, ଧର୍ମ, ସଂପ୍ରଦାୟ ଓ ବିଭିନ୍ନ ସ୍ଥାନର ଚଳଣିରୁ ମିଳୁଥିବା ତଥ୍ୟ ଓ ବିଭିନ୍ନ ଫଟୋଗ୍ରାଫ, ଚଳଚିତ୍ର ଓ ଚିତ୍ରକଳାର ସାହାଯ୍ୟ ନେବାକୁ ପଡିଥାଏ ।

ଅଧିକାଂଶ କ୍ଷେତ୍ରରେ ନିର୍ଦ୍ଦେଶକ ନାଟକର ବିଭିନ୍ନ ଚରିତ୍ର ଲାଗି ପୋଷାକ ଓ ଅଳଙ୍କାର ତିଆରି କିମ୍ବା ନିର୍ବାଚନ କରିବାଲାଗି ପେଶାଦାର ରୂପସଜ୍ଜାକାରୀଙ୍କ ଉପରେ ନିର୍ଭର କରିଥାନ୍ତି । ସେମାନଙ୍କଠାରୁ ଅଣାଯାଇଥିବା ଏହି ପୋଷାକ ଯେପରି ଚରିତ୍ର ଉପଯୋଗୀ ହୁଏ ସେଥିପ୍ରତି ନର୍ଦ୍ଦେଶକ ଦୃଷ୍ଟି ଦେବା ଆବଶ୍ୟକ ।

ପୋଷାକ ପରିଚ୍ଛଦର କଳାତ୍ମକ ମାନ ଓ ରୁଚିସମ୍ପନ୍ନତା ଅଭିନେତା ଅଭିନେତ୍ରୀଙ୍କୁ ପ୍ରାଣବନ୍ତ କରାଏ । ପୋଷାକ ଚରିତ୍ର ଉପଯୋଗୀ ନ ହେଲେ ଅଭିନୟ ଦର୍ଶକଙ୍କୁ ପ୍ରଭାବିତ କରିପାରେ ନାହିଁ । ଧରି ନିଆଯାଉ ମହାଭାରତର କୌଣସି ଘଟଣାର ନାଟ୍ୟାଭିନୟରେ ଦ୍ରୌପଦୀଙ୍କୁ ସମ୍ବଲପୁରୀ ଶାଢୀ ପିନ୍ଧାଇ କାନରେ ଇୟରିଂ ଲଗାଇ ଓ ଗୋଡରେ ସ୍ୱଞ୍ଚପଲ ଦେଇ ଏବଂ କୃଷ୍ଣଙ୍କୁ କଳା ପାଇଜାମା ସହ ଧଳା ଚୁଡିଦାର ପଞ୍ଜାବୀ ପିନ୍ଧାଇ ମଞ୍ଚକୁ ପଠାଇ ଦିଆଗଲା । ଅଭିନୟ ଯେତେ ଉଚ୍ଚକୋଟୀର ହେଲେ ମଧ୍ୟ ତାହା ଦର୍ଶକଙ୍କୁ ପ୍ରଭାବିତ କରିବ ନାହିଁ; କାରଣ ନାଟକର ପ୍ରଯୋଜନା ଦର୍ଶକଙ୍କୁ ମହାଭାରତ ଯୁଗକୁ ଟାଣିନେଇପାରିଲା ନାହିଁ ।

ତେବେ ବିଦ୍ୟାଳୟର ସାଧାରଣ ଦିନମାନଙ୍କରେ ପିଲାଙ୍କଦ୍ୱାରା ଲିଖିତ ନାଟକର ଅଭିନୟ ସମୟରେ ଶିକ୍ଷକ-ତତ୍ତ୍ୱାବଧାରକ ପିଲାମାନଙ୍କୁ ବିଭିନ୍ନ ଚରିତ୍ରଙ୍କ ଲାଗି ଉଦ୍ଦିଷ୍ଟ ବେଶ ପୋଷାକ ତଥା ଅଳଙ୍କାରର ଧାରଣା ଦେଇ ସେମାନଙ୍କୁ ନିଜ ଘରୁ ବା ପଡୋଶୀଙ୍କ ଘରୁ ଯାହା ସମ୍ଭବ ସଂଗ୍ରହ କରିବାକୁ କହିବେ । ପେଶାଦାର ରୂପସଜ୍ଜାକାରୀଙ୍କଠାରୁ ଆଣି ଖର୍ଚ୍ଚାନ୍ତ ହେବା ତାଙ୍କ ପକ୍ଷେ ସମ୍ଭବ ନୁହେଁ । ମାତ୍ର ବିଦ୍ୟାଳୟର ବାର୍ଷିକ ଉତ୍ସବ ବା ପୁରସ୍କାର ବିତରଣ ସମୟରେ ମଞ୍ଚସ୍ଥ ହେଉଥିବା ନାଟକ ଅଭିନୟ ବେଳେ ପୋଷାକ ଏବଂ ଅଳଙ୍କାର ପ୍ରତି ଯଥାଯଥ ଦୃଷ୍ଟି ଦେବା ଆବଶ୍ୟକ । ପ୍ରଥମୋକ୍ତ ଅଭିନୟ କ୍ଷେତ୍ରରେ କେବଳ ଛାତ୍ରଛାତ୍ରୀମାନେ ଦର୍ଶକ ହେତୁ ସେମାନଙ୍କୁ ନାଟକର ଘଟଣା, ସଂଳାପ, ଅଭିନୟଚାତୁରୀ ଯେତେ ପ୍ରଭାବିତ କରିବ ପୋଷାକ ଓ ଅଳଙ୍କାର ସେତେ ପ୍ରଭାବିତ କରିବ ନାହିଁ । ମାତ୍ର ଦ୍ୱିତୀୟୋକ୍ତ ନାଟକର ଦର୍ଶକ ହେଉଛନ୍ତି ସ୍ଥାନୀୟ ଜନତା । ସେମାନଙ୍କ ଉପରେ ପୋଷାକ ଓ ଅଳଙ୍କାର ଆଦି ଅଧିକ ପ୍ରଭାବ ପକାଇବ ।

## ୨. ପ୍ରସାଧନ :

ଆଜିକାଲି ରାସାୟନିକ ଦ୍ରବ୍ୟ ସାହାଯ୍ୟରେ ପ୍ରସାଧନ କରାଯାଉଥିଲେ ମଧ୍ୟ ସ୍କୁଲନାଟକ ପାଇଁ ଗ୍ରାମ୍ୟ ପରିବେଶର ପ୍ରାକୃତିକ ଉପାଦାନମାନଙ୍କରୁ ପ୍ରସାଧନର ସାମଗ୍ରୀ ବାହାର କରାଯାଇ ବ୍ୟବହାର କରାଯାଇପାରେ । ହଳଦୀ, ଚକ୍‌ଖଡିଗୁଣ୍ଡ, ଗେରୁ, ହାଣ୍ଡିକଳା, ଅଳତା, ସିନ୍ଦୁର, କଜ୍ଜ୍ୱଳ, ନୀଳରଙ୍ଗ, ମଞ୍ଜୁଆତି ଓ ପିହୁଡି ଆଦି ସାମଗ୍ରୀକୁ ଏଥିପାଇଁ ବ୍ୟବହାର କରାଯାଇପାରେ । ସେହିପରି ନିଶ ଦାଢି କରିବାପାଇଁ ତୁଳା, ଝୋଟ, ନଡିଆକତା କିମ୍ବା ସେହିଭଳି କିଛି ନରମ ତନ୍ତୁଜ ପଦାର୍ଥ ବ୍ୟବହାର କରାଯାଇପାରେ ।

## ୩. ପ୍ରସାଧନର ପ୍ରୟୋଗ ବିଧି :

ପ୍ରଥମେ ଅଭିନେତା ବା ଅଭିନେତ୍ରୀର ମୁହଁକୁ ସାବୁନ୍‌ରେ ଧୋଇଦେବା ଆବଶ୍ୟକ । ଏହାଦ୍ୱାରା ମୁହଁରେ ଥିବା ତେଲିଆ ପଦାର୍ଥ ପରିଷ୍କାର ହୋଇଯାଏ । ପିହୁଡ଼ି ଓ ସିନ୍ଦୁରକୁ ପାଣିରେ ଫେଣ୍ଟି କାଦୁଅ ଭଳି କରି ଭିନ୍ନ ଭିନ୍ନ ପାତ୍ରରେ ରଖିବ । ପିହୁଡ଼ି ଓ ସିନ୍ଦୁରକୁ ଆବଶ୍ୟକ ପରିମାଣରେ ନେଇ ନିଜ ହାତ ପାପୁଲିରେ ପ୍ରଥମେ ଘସି ମିଶାଇବ ଓ ତାହାକୁ ଅଭିନେତାର ମୁଖ ମଣ୍ଡଳରେ ଲଗାଇବ । ତା'ପରେ କଜ୍ୱଳ ସାହାଯ୍ୟରେ ଅଭିନେତା ଅଭିନେତ୍ରୀର ଭ୍ରୁ, କଲି ଆଦି କରିଦେବ । ଏକ ବୃଦ୍ଧ ଚରିତ୍ରର କେଶକୁ ପାଚିଲା କରିବାପାଇଁ ଚକ୍‌ଗୁଣ୍ଡରେ ସାମାନ୍ୟ ପିହୁଡ଼ି ମିଶାଇ ତାହାକୁ ପାଣିରେ ଗୋଳି ତରଳ କରି ପାନିଆ ସାହାଯ୍ୟରେ ମୁଣ୍ଡବାଳରେ କୁଣ୍ଡାଇଲାଭଳି ଲଗାଅ ।

ଏହା ପରେ ଆଗରୁ ଧଳା ଓ କଳା ରଙ୍ଗ ଦିଆଯାଇଥିବା ଝୋଟ ନେଇ ତାହାକୁ ଅଠା ସାହାଯ୍ୟରେ ପ୍ରୟୋଜନ ମୁତାବକ ନିଶ ଦାଢୀ ଲଗାଇ ଅଭିନେତାକୁ ଶିଖ, ହିନ୍ଦୁ, ମୁସଲମାନ, ଇଂରେଜ, ଫ୍ରେଞ୍ଚ ଆଦି ଯେ କୌଣସି ଚରିତ୍ରର ରୂପ ଦିଆଯାଇପାରେ ।

ଆଜିକାଲି ଅବଶ୍ୟ ପଥପ୍ରାନ୍ତ ନାଟକ ବା ପରିବେଶଗତ ନାଟକରେ ସମୟ ସମୟରେ ଆଦୌ ମୁଖ ପ୍ରସାଧନ ଗ୍ରହଣ ନକରି ମଧ୍ୟ ଅଭିନେତାମାନେ ସାଧାରଣଭାବେ ଅଭିନୟ କରୁଛନ୍ତି ।

## ୪. ନାଟକରେ ଚରିତ୍ରଉପଯୋଗୀ ପ୍ରସାଧନ :

ଚରିତ୍ରର ବୟସ ଓ ଗୁରୁତ୍ୱ ଦୃଷ୍ଟିରୁ ଏହାର ରୂପସଜ୍ଜାକୁ ଛଅ ଭାଗରେ ବିଭକ୍ତ କରାଯାଇଛି ।

**ସରଳ ରୂପସଜ୍ଜା, ଯୌବନର ରୂପସଜ୍ଜା, ମଧ୍ୟ ବୟସ୍କର ରୂପସଜ୍ଜା, ବାର୍ଦ୍ଧକ୍ୟର ରୂପସଜ୍ଜା ଏବଂ ଅତି ବାର୍ଦ୍ଧକ୍ୟର ରୂପସଜ୍ଜା ।**

**(୧) ସରଳ ପ୍ରସାଧନ ପଦ୍ଧତି :** ଅଭିନେତାଙ୍କର ରୂପ ଓ ବୟସ ନାଟକର ଚରିତ୍ରାନୁରୂପ ହୋଇଥିଲେ ଅଭିନେତାଙ୍କର ମୁଖମଣ୍ଡଳରେ ଅଧିକ ପ୍ରସାଧନ ପ୍ରୟୋଗର ପ୍ରୟୋଜନ ନ ଥାଏ । ଏଭଳି କ୍ଷେତ୍ରରେ ଅଭିନେତାଙ୍କର ମୁଖରେ କେବଳ ପାଉଡର ଲଗାଇ ଭ୍ରୁ ଆଦି ଅଙ୍କନ କରିଦେଲେ ଅତି ସହଜରେ ତାଙ୍କର ମୁଖମଣ୍ଡଳଟି ଚରିତ୍ରାନୁରୂପ ହୋଇଯିବ ।

(୨) **ଯୌବନର ପ୍ରସାଧନ :** ଏହି ପ୍ରସାଧନରେ ଚରିତ୍ରର ବୟସ ସୀମା ୧୮/୧୯ରୁ ୩୦ ବର୍ଷ ମଧ୍ୟରେ ରହେ । ଏହି ବୟସରେ ମୁଖମଣ୍ଡଳ ସଦୃଶ୍ୟ, ସୁଢଳ ଓ ମନୋରମ ହୋଇଥାଏ । ତେଣୁ ଅଭିନେତାଙ୍କର ମୁଖମଣ୍ଡଳର ଖାଲ ବା ନିମ୍ନଅଂଶକୁ ରୂପସଜ୍ଜା ମାଧ୍ୟମରେ ସାମାନ୍ୟ ଉଚ୍ଚକରି ଓ ଉଚ୍ଚ ଅଂଶକୁ ସେହିପରି ନିମ୍ନ କରି ସମଗ୍ର ମୁଖମଣ୍ଡଳକୁ ଏକ ମନୋରମ ଓ ସୁଢଳ ମୁଖମଣ୍ଡଳରେ ରୂପାନ୍ତରିତ କରାଯାଇପାରେ ।

ମୁଖମଣ୍ଡଳର ନିମ୍ନଅଂଶକୁ ଉଚ୍ଚ କରିବାଲାଗି ମୁଖମଣ୍ଡଳରେ ଦିଆଯାଉଥିବା ପ୍ରସାଧନର ପ୍ରଥମ ପ୍ରଲେପରେ ଅଧିକ ଉଜ୍ଜ୍ୱଳ ବର୍ଣ୍ଣର ରଙ୍ଗକୁ ସୁନିୟନ୍ତ୍ରିତ ଭାବରେ ବ୍ୟବହାର କରାଯାଏ । ଠିକ୍ ତା'ର ବିପରୀତ ପଦ୍ଧତିରେ ମଳିନ ରଙ୍ଗ ପ୍ରୟୋଗଦ୍ୱାରା ଉଚ୍ଚ ଅଂଶକୁ ନିମ୍ନ ଅଂଶରେ ପରିଣତ କରିହେବ ।

(୩) **ମଧ୍ୟ ବୟସ୍କର ପ୍ରସାଧନ :** ଏହି ପ୍ରସସାଧନରେ ଚରିତ୍ରର ବୟସ ପ୍ରାୟ ୩୦ରୁ ଆରମ୍ଭ ହୋଇ ୪୫ ବର୍ଷ ପର୍ଯ୍ୟନ୍ତ ହୋଇଥାଏ । ଏହି ବୟସର ଚରିତ୍ରର ମୁଖମଣ୍ଡଳରେ ମାଂସପେଶୀର କିଛି ରେଖା (wrinkle) ସୃଷ୍ଟି କରିବା ଦରକାର ହୁଏ ।

(୪) **ବାର୍ଦ୍ଧକ୍ୟର ପ୍ରସାଧନ :** ଏହି ପ୍ରସାଧନରେ ଚରିତ୍ରର ବୟସ ପ୍ରାୟ ୪୫ ବର୍ଷରୁ ଆରମ୍ଭ ହୋଇ ୬୫ ବର୍ଷ ପର୍ଯ୍ୟନ୍ତ ହୋଇଥାଏ । ଏଭଳି କ୍ଷେତ୍ରରେ ଚରିତ୍ରର ମୁଖରେ ମଳିନତା ଦେଖା ଦେବା ସଙ୍ଗେ ସଙ୍ଗେ ନିମ୍ନଅଂଶ ଅପେକ୍ଷାକୃତ ଅଧିକ ନିମ୍ନ ଓ ଉଚ୍ଚଅଂଶ ଅପେକ୍ଷାକୃତ ଅଧିକ ଉଚ୍ଚ ହୋଇଥାଏ ଏବଂ ମୁଖର ମାଂସପେଶୀମାନଙ୍କରେ ଦୁର୍ବଳତା ସୃଷ୍ଟି ହୋଇ ସେଥିରେ ଅତ୍ୟଧିକ ରେଖାମାନ ଦେଖିବାକୁ ମିଳିଥାଏ । ଏପରି କ୍ଷେତ୍ରରେ ଅଭିନେତାଙ୍କର ମୁଖମଣ୍ଡଳସ୍ଥ ଉଚ୍ଚଅଂଶକୁ ଅଧିକ ଉଚ୍ଚ ଏବଂ ନିମ୍ନ ଅଂଶକୁ ଅଧିକ ନିମ୍ନ କରିବା ସଙ୍ଗେ ସଙ୍ଗେ ଅଧିକ ଚର୍ମସଙ୍କୋଚନ ଦେଖାଇବା ଲାଗି ଆବଶ୍ୟକମତେ ରେଖାମାନ ଦର୍ଶାଇବାକୁ ପଡେ ।

(୫) **ଅତି ବାର୍ଦ୍ଧକ୍ୟର ପ୍ରସାଧନ :** ଏହି ପ୍ରସାଧନରେ ଚରିତ୍ରର ବୟସ ୬୫ରୁ ଉର୍ଦ୍ଧ୍ୱ ହୋଇଥିବାରୁ ଅଭିନେତାର ମୁଖମଣ୍ଡଳ ଉପରେ ଲୋଳିତ ଚର୍ମର ଛାପ ସୃଷ୍ଟିକରିବା ଆବଶ୍ୟକ ହୋଇଥାଏ । ଏଥିଲାଗି ମୁଖରେ ରେଖା ସଂଖ୍ୟା ବଢାଇ ଦିଆଯାଏ ।



# ମଞ୍ଚରେ ଆଲୋକ ନିୟନ୍ତ୍ରଣ

ଦିନଥିଲା ଯେତେବେଳ ବିଦ୍ୟୁତ୍ ଆଲୋକର ଉଦ୍ଭାବନ ହୋଇନଥିଲା । ସେତେବେଳେ ମଧ ଗାଁ ଗଣ୍ଡାରେ, ସହରରେ ନାଟକ ହେଉଥିଲା Petromax ଆଲୋକରେ କିମ୍ବା ସ୍ୱଚ୍ଛ ଦିବାଲୋକରେ । ସେହିପରି ଯେଉଁ ସ୍କୁଲରେ ବିଦ୍ୟୁତ୍ ଆଲୋକର ବ୍ୟବସ୍ଥା ନାହିଁ ସେଠାରେ ଅନ୍ୟ ଆଲୋକର ବ୍ୟବହାର କରାଯାଇପାରେ ନଚେତ୍ ଦିନରେ ନାଟକ ଅଭିନୟ କରାଯାଇପାରେ । ମାତ୍ର ଯେଉଁ ସ୍କୁଲମାନଙ୍କରେ ବିଦ୍ୟୁତ୍ ଆଲୋକର ବ୍ୟବସ୍ଥା ଅଛି ସେଠାରେ ମଞ୍ଚକୁ ଆଲୋକିତ କରିବା ଲାଗି ବିଦ୍ୟୁତ୍ ଶକ୍ତି ବ୍ୟବହାର କରାଯାଇପାରେ ।

ବିଦ୍ୟୁତ୍ ଆଲୋକ ବ୍ୟବହାର କରୁଥିବା ସ୍କୁଲମାନଙ୍କରେ ଉନ୍ନତ ଆଲୋକରେ ନାଟକ ମଞ୍ଚସ୍ଥ କରିବାପାଇଁ ମଞ୍ଚରେ ବିଭିନ୍ନ ବର୍ଣ୍ଣାଳୀର ମିଶ୍ରଣ ଓ ତାର ପ୍ରତିକ୍ରିୟା ସମ୍ପର୍କରେ କିଛି ସୂଚନା ଦିଆଗଲା ।

ଭିନ୍ନ ଭିନ୍ନ ବର୍ଣ୍ଣାଳୀର ମିଶ୍ରଣ ଫଳରେ ନୂତନ ବର୍ଣ୍ଣାଳୀ ସୃଷ୍ଟି କରାଯାଇ ପାରେ । ଆଲୋକର ତିନୋଟି **ମୌଳିକ ବର୍ଣ୍ଣ** ହେଲା, **ନାଲି, ନୀଳ** ଏବଂ **ସବୁଜ** । ଯେ କୌଣସି ଦୁଇଟି ମୌଳିକ ରଙ୍ଗକୁ ସମାନୁପାତିକ ଭାବେ ମିଶାଇଲେ ଏକ ତୃତୀୟ ବର୍ଣ୍ଣ ସୃଷ୍ଟି ହୁଏ । ଏହି ନୂତନ ବର୍ଣ୍ଣକୁ **ଯୌଗିକ ବର୍ଣ୍ଣ** କୁହାଯାଏ । ଯଥା : ନାଲି ଓ ନୀଳର ମିଶ୍ରଣରେ ଉତ୍ପନ୍ନ ହୁଏ **ମ୍ୟାଜେଣ୍ଟା** । ନୀଳ ଓ ସବୁଜର ମିଶ୍ରଣରେ **ନୀଳାଭ ସବୁଜ** ଏବଂ ସବୁଜ ଓ ନାଲିର ମିଶ୍ରଣରେ **ହଳଦିଆ ରଙ୍ଗ** ଉତ୍ପନ୍ନ ହୋଇଥାଏ । ତିନିପ୍ରକାର ପଦ୍ଧତିରେ ମଞ୍ଚରେ ବର୍ଣ୍ଣର ମିଶ୍ରଣ ଓ ପ୍ରୟୋଗ କରାଯାଇପାରେ । ଯଥା : **ସଂଯୋଗ ପଦ୍ଧତି** (additive mixing), **ବିୟୋଗ ପଦ୍ଧତି** (Subtractive mixing) ଏବଂ **ଭଗ୍ନ ମିଶ୍ରଣ ପଦ୍ଧତି** (Broken Colour mixing) । ଅଧ୍ୟାୟ ଶେଷରେ ଦେଖ- ଚିତ୍ର ୪ ଆଲୋକର ବର୍ଣ୍ଣଚିତ୍ର)

**ସଂଯୋଗ ପଦ୍ଧତି :** ଏକାଧିକ ଆଲୋକ ଉତ୍ସରୁ ଆସୁଥିବା ଏକାଧିକ ରଙ୍ଗର ବର୍ଣ୍ଣାଳୀକୁ ଏକ ଧଳା ପରଦା ଉପରେ ମିଶ୍ରଣ କରାଇ ନୂତନ ବର୍ଣ୍ଣ ଉତ୍ପନ୍ନ କରାଇବା ପଦ୍ଧତିହିଁ **ସଂଯୋଗ ପଦ୍ଧତି** । (ଦେଖ- ଚିତ୍ର ୫ ବର୍ଣ୍ଣର ସଂଯୋଗ ମିଶ୍ରଣ)

**ବିୟୋଗ ପଦ୍ଧତି :** ଏକ ଆଲୋକ ଉତ୍ସ ସମ୍ମୁଖରେ ଆଗପଛ ହୋଇ ଏକାଧିକ ରଙ୍ଗର ବର୍ଣ୍ଣାଳୀ ବ୍ୟବହାର କରି ଧଳା ପରଦା ଉପରେ ମିଶ୍ରିତ ବର୍ଣ୍ଣ ସୃଷ୍ଟି କରିବା ପଦ୍ଧତିକୁ **ବିୟୋଗ ପଦ୍ଧତିର ବର୍ଣ୍ଣ ମିଶ୍ରଣ** କୁହାଯାଏ । (ଦେଖ- ଚିତ୍ର ୬ ବର୍ଣ୍ଣର ବିୟୋଗ ମିଶ୍ରଣ)

**ଭଗ୍ନ-ମିଶ୍ରଣ ପଦ୍ଧତି** - ଏକ ଆଲୋକଉତ୍ସ ସମ୍ମୁଖରେ ଏକମାତ୍ର ଚଉବାଡ (frame) ମଧ୍ୟରେ ଏକାଧିକ ରୋଧକ ବ୍ୟବହାର କରି ଧଳାପରଦା ଉପରେ ବର୍ଣ୍ଣାଳୀ ସୃଷ୍ଟି କରିବା ପଦ୍ଧତିକୁ **ଭଗ୍ନ ମିଶ୍ରଣ ପଦ୍ଧତି** କୁହାଯାଏ । (ଦେଖ- ଚିତ୍ର ୭ ବର୍ଣ୍ଣର ଭଗ୍ନ ମିଶ୍ରଣ)

ବିଭିନ୍ନ ବର୍ଣ୍ଣକୁ ତା'ର ମାନସିକ ପ୍ରକ୍ରିୟା ଦୃଷ୍ଟିରୁ ତିନିଭାଗରେ ବିଭକ୍ତ କରାଯାଇଛି, ଯଥା : **ଉଷ୍ଣବର୍ଣ୍ଣ** (ନାଲି, କମଳା, ହଳଦୀ), ଶୀତଳ ବର୍ଣ୍ଣ (ନୀଳ, ନୀଳାଭ- ସବୁଜ, ମ୍ୟାଜେଣ୍ଟା), **ନିରପେକ୍ଷ ବର୍ଣ୍ଣ** (ସବୁଜ) । ହତ୍ୟା, ବିଦ୍ରୋହ, ଅଗ୍ନି, ପ୍ରତିଶୋଧ, ବୀରତ୍ୱ, ଘୃଣା, ଲଜ୍ଜା, କ୍ରୋଧ, ସାହସ, ଆନନ୍ଦ, ଲାଳସା ଓ କାମନା ଆଦିର ଉଷ୍ଣ ବର୍ଣ୍ଣର ବ୍ୟବହାର କରାଯାଏ । ଶୀତଳ ବର୍ଣ୍ଣର ପ୍ରୟୋଗ କରାଯାଏ ଦୁଃଖ, ମୃତ୍ୟୁ, ହତାଶା, ଜରା, ବ୍ୟାଧି, ଯନ୍ତ୍ରଣା, ରୋଗ, ଅବିଶ୍ୱାସ, ସନ୍ଦେହ, କ୍ଳାନ୍ତି, ନିର୍ଜୀବତା, ଅବସାଦ, କରୁଣା, ଦୟା ଆଦି କ୍ଷେତ୍ରରେ । ନିରପେକ୍ଷ ବର୍ଣ୍ଣକୁ ଯୌବନ, ଆଶା, ବିଶ୍ୱାସ, ଶାନ୍ତି ଓ ସଜୀବତା କ୍ଷେତ୍ରରେ ବ୍ୟବହାର କରାଯାଇଥାଏ ।

## ରଙ୍ଗୀନ୍ ଆଲୋକର ପ୍ରଭାବ :

ନାଟ୍ୟ ପ୍ରଯୋଜନା ବେଳେ ବିଭିନ୍ନ ରଙ୍ଗର ଦୃଶ୍ୟପଟ ଅଭିନେତା, ଅଭିନେତ୍ରୀଙ୍କର ପରିହିତ ବିଭିନ୍ନ ରଙ୍ଗର ପୋଷାକ-ପରିଚ୍ଛଦ ଓ ଅଳଙ୍କାର ଉପରେ ବିଭିନ୍ନ ରଙ୍ଗର ଆଲୋକ ଆପତିତ ହେଲେ ଆଲୋକର ରଙ୍ଗ ପ୍ରଭାବରେ ବସ୍ତୁଗୁଡିକ ଉପରେ ଏକ ତୃତୀୟ ରଙ୍ଗ ସୃଷ୍ଟି ହୁଏ । ଏଠାରେ ଏଭଳି କେତେକ ଉଦାହରଣ ଦିଆଗଲା ।

| | ବସ୍ତୁର ରଙ୍ଗ | ଆପତିତ ଆଲୋକ ରଶ୍ମି | ବସ୍ତୁରେ ଉତ୍ପନ୍ନ ତୃତୀୟ ବର୍ଣ୍ଣ |
|---|---|---|---|
| ୧. | ବାଇଗଣି | ଘନନୀଳ | ନୀଳାଭ- ବାଇଗଣି |
| | ବାଇଗଣି | ସବୁଜ | ଗାଢନୀଳ |
| | ବାଇଗଣି | ଲାଲ | ପର୍ପଲ୍ |
| | ବାଇଗଣି | ଚମ୍ପା | ଗାଢ- କମଳା |
| ୨. | ଘନନୀଳ | ସବୁଜ | ନୀଳାଭ- ସବୁଜ |
| | ଘନନୀଳ | ଚମ୍ପା | ହଳଦିଆ ସବୁଜ |
| | ଘନନୀଳ | ଲାଲ | ନେଳିଆ- ବାଇଗଣି |
| ୩. | ସବୁଜ | ଘନନୀଳ | ନୀଳାଭ- ସବୁଜ |
| | ସବୁଜ | ଚମ୍ପା | ଗାଢ ହଳଦିଆ |

| | | | |
|---|---|---|---|
| | ସବୁଜ | ଲାଲ | ଗାଢ କମଳା |
| ୪. | ହଳଦୀ | ଘନନୀଳ | ଗାଢ ହଳଦୀ-ସବୁଜ |
| | ହଳଦୀ | ସବୁଜ | ହଳଦୀ ସବୁଜ |
| | ହଳଦୀ | ଲାଲ | କମଳା |
| ୫. | କମଳା | ଘନନୀଳ | ଗାଢ କମଳା |
| | କମଳା | ସବୁଜ | ସବୁଜିଆ ହଳଦୀ |
| | କମଳା | ଲାଲ | ସ୍କାରଲେଟ୍ ଲାଲ |
| | କମଳା | ଚମ୍ପା | ବହଳ କମଳା |
| ୬. | ଲାଲ | ଘନନୀଳ | ଗାଢ ନାଲିଆ ପର୍ପଲ୍ |
| | ଲାଲ | ସବୁଜ | ଗାଢ କମଳା |
| | ଲାଲ | ଚମ୍ପା | କମଳା ରଙ୍ଗର ନାଲି |
| ୭. | ନୀଳାଭ ସବୁଜ | ଘନନୀଳ | ଗାଢ ନୀଳାଭ- ସବୁଜ |
| | ନୀଳାଭ ସବୁଜ | ସବୁଜ | ନୀଳାଭ -ସବୁଜ |
| | ନୀଳାଭ ସବୁଜ | ଚମ୍ପା | ହଳଦିଆ ସବୁଜ ଆଭା |
| | ନୀଳାଭ ସବୁଜ | ଲାଲ | କଳାଚିଆ ନାଲି |

**ମଞ୍ଚରେ ଶବ୍ଦ ନିୟନ୍ତ୍ରଣ :**

ଡାକବାଜି ଯନ୍ତ୍ରର ବ୍ୟବହାର ହେବା ପୂର୍ବରୁ ଯାତ୍ରା ନାଟକ ଭଳି ହଜାର ହଜାର ଦର୍ଶକ ବସିପାରୁଥିବା ପ୍ରେକ୍ଷାସ୍ଥଳରେ ମଧ୍ୟ ଅଭିନେତାମାନେ କେବଳ ନିଜର କଣ୍ଠସ୍ୱର ମାଧ୍ୟମରେ ସଫଳ ନାଟ୍ୟାଭିନୟ କରିପାରୁଥିଲେ । ସେହିପରି ସ୍କୁଲରେ ଅଭିନୀତ ନାଟକରେ ଡାକବାଜି ଯନ୍ତ୍ରର ବ୍ୟବହାର ନ କରି ଶିକ୍ଷକ ଯଦି ଛାତ୍ର ଛାତ୍ରୀମାନଙ୍କ କଣ୍ଠସ୍ୱରକୁ ଉପଯୁକ୍ତ ଭାବେ ନିୟନ୍ତ୍ରିତ କରାଇପାରନ୍ତି ତା'ହେଲେ ମଧ୍ୟ ତାହା ବହୁଦୂର ଶ୍ରୁତିଗୋଚର ହୋଇପାରିବ ।

ସଂଳାପ ବ୍ୟତୀତ ବିଭିନ୍ନ ପରିପୂରକ ଧ୍ୱନି ସୃଷ୍ଟି କରିବାକୁ ହେଲେ, ଟେପ୍ ରେକର୍ଡର କିମ୍ବା ଡାକବାଜି ଯନ୍ତ୍ର ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କଦ୍ୱାରା କୃତ୍ରିମ ଭାବେ ସେମାନଙ୍କ କଣ୍ଠରେ ଅଥବା କାଠକୁ କାଠରେ ବାଡେଇ, ଥାଳିଆ ବାଡେଇ, ନିଡିଆସଢେଇକୁ ପଥର ଦେହରେ ଘଷି ବିଭିନ୍ନ ଶବ୍ଦ ସୃଷ୍ଟି କରାଯାଇ ତାହାକୁ ନାଟକରେ ସଫଳ ପ୍ରୟୋଗ କରାଯାଇପାରେ । ଉଦାହରଣ ସ୍ୱରୂପ ଯଦି ବର୍ଷା ରାତ୍ରିରେ କୌଣସି

ଏକ ଦୂରଗାମୀ ରେଳଗାଡ଼ିର ଶବ୍ଦ ଏକ ଦୃଶ୍ୟରେ ଥାଏ ତା'ହେଲେ ଟିଣ ବାଡେଇ ଘଡଘଡି ଶବ୍ଦ, ପୋଷ୍ଟକାର୍ଡକୁ ଫୁଙ୍କି ଝଡର ଶବ୍ଦ, ସେଲୋଫିନ୍ କାଗଜକୁ ଘଷି ବର୍ଷାର ଶବ୍ଦ ସୃଷ୍ଟି କରାଯାଇପାରେ ।

ଏହିପରି ବିଭିନ୍ନ ଉପାୟରେ କୃତ୍ରିମ ଶବ୍ଦ ସୃଷ୍ଟି କରି ନାଟକରେ ବ୍ୟବହାର କରାଯାଇପାରେ ।

ସମସ୍ତ ଅଭିନେତା ଅଭିନେତ୍ରୀଙ୍କର ଗୀତ ଗାଇବାର ଦକ୍ଷତା ନଥାଏ । ମାତ୍ର କେତେକ ଚରିତ୍ରଙ୍କର କ୍ଷେତ୍ରରେ ସଂଳାପ ସହ ଗୀତ ଗାଇବାର ଆବଶ୍ୟକତା ଉପଲବ୍ଧ ହୁଏ । ଏପରି ସ୍ଥଳେ ପ୍ରଚ୍ଛଦପଟ ଗାୟକ ଅଥବା ଗାୟିକା ମଞ୍ଚ ଅନ୍ତରାଳରୁ ମାଇକ୍ରୋଫୋନରେ ଗୀତ ଗାଇଥାନ୍ତି ଓ ସଂପୃକ୍ତ ଚରିତ୍ର କେବଳ ଗୀତ ଗାଇବା ଭଳି ମୁଖଭଙ୍ଗୀ କରିଥା'ନ୍ତି । ଏତଦ୍‌ବ୍ୟତୀତ ଦୃଶ୍ୟର ଘଟଣାକୁ ଅଧିକ ପ୍ରଭାବଶାଳୀ କରିବା ପାଇଁ ସଙ୍ଗୀତର ମୂର୍ଚ୍ଛନା ଅତ୍ୟନ୍ତ ସହଯୋଗୀ । ବିଭିନ୍ନ ରାଗ ବା ରାଗିଣୀ ମନ ଉପରେ ବିଭିନ୍ନ ଭାବର ଉଦ୍ରେକ କରିଥାଏ । ଏଣୁ ଚରିତ୍ରର ସଂଳାପ ଭାବ-ଭଙ୍ଗୀ ଆଦିର ଦୁଃଖ, ଶୋକ, ବିରକ୍ତି, ହତାଶା, ପ୍ରତିହିଂସା ଆଦି ଭାବ ପ୍ରସ୍ଫୁଟିତ କରିବାରେ ସଙ୍ଗୀତ ଅତ୍ୟନ୍ତ ସହାୟକ ।

ଏହିଭଳି ମଞ୍ଚ ଅନ୍ତରାଳରୁ ମାଇକ୍ରୋଫୋନ ମାଧ୍ୟମରେ ଉପଯୁକ୍ତ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କରି ନାଟକକୁ ଅଧିକ ପ୍ରଭାବଶାଳୀ କରାଯାଇପାରେ ।




ଚିତ୍ର ୪ ଆଲୋକର ବର୍ଣ୍ଣଚକ୍ର




ଚିତ୍ର ୫: ବର୍ଣ୍ଣର ସଂଯୋଗ ମିଶ୍ରଣ




ଚିତ୍ର ୬: ବର୍ଣ୍ଣର ବିୟୋଗ ମିଶ୍ରଣ




ଚିତ୍ର ୭: ବର୍ଣ୍ଣର ଭଗ୍ନ ମିଶ୍ରଣ

# ନାଟ୍ୟ ପ୍ରଯୋଜନା

## ୧. ନାଟକ ଚୟନ :

ବିଦ୍ୟାଳୟରେ ନାଟ୍ୟ ପ୍ରଯୋଜନାର ଦାୟିତ୍ୱ ସାଧାରଣତଃ ଜଣେ ଶିକ୍ଷକ ବା ଶିକ୍ଷୟିତ୍ରୀଙ୍କୁ ଗ୍ରହଣ କରିବାକୁ ପଡିଥାଏ । ତାଙ୍କରି ନେତୃତ୍ୱରେ ସ୍କୁଲର ଛାତ୍ରଛାତ୍ରୀମାନେ ନାଟକରେ ବିଭିନ୍ନ ଭୂମିକା ଗ୍ରହଣ କରିଥାଆନ୍ତି । ପ୍ରଯୋଜନାର ମୁଖ୍ୟ ବିଭାଗ ହେଲା ନାଟ୍ୟ ନିର୍ଦ୍ଦେଶନା । ଭିନ୍ନ ଭିନ୍ନ ନିର୍ଦ୍ଦେଶକ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ନାଟ୍ୟ ନିର୍ଦ୍ଦେଶନା କରିଥାଆନ୍ତି । ନାଟ୍ୟ ନିର୍ଦ୍ଦେଶନାରେ କେତୋଟି ମୁଖ୍ୟ ଓ ସାଧାରଣ ସୋପାନ ଏଠାରେ ଆଲୋଚନା କରାଯାଉଛି । ପ୍ରଥମେ ନାଟକ ପ୍ରଯୋଜନା ପାଇଁ ନାଟକ ନିର୍ବାଚନ, ଅଭିନେତା, ଅଭିନେତ୍ରୀ ଓ ସହକାରୀ ନିର୍ବାଚନ, ନାଟକ ଅଭ୍ୟାସର ସମୟ ଓ ସ୍ଥାନର ବ୍ୟବସ୍ଥା, ସ୍କୁଲର ସ୍ଥାୟୀ ପ୍ରେକ୍ଷାଗୃହ ନଥିଲେ ଅସ୍ଥାୟୀ ରଙ୍ଗମଞ୍ଚ କିମ୍ବା ସ୍କୁଲ ପ୍ରାଙ୍ଗଣରେ ନାଟ୍ୟାଭିନୟ ପାଇଁ କ୍ଷେତ୍ରର ପ୍ରସ୍ତୁତି ଏବଂ ଅଭିନେତା ଅଭିନେତ୍ରୀଙ୍କର ପୋଷାକ, ଅଳଙ୍କାର, ରୂପସଜ୍ଜା ଓ ହସ୍ତୋପକରଣ ଆଦି ତିଆରି କରିବାର ବ୍ୟବସ୍ଥା ଗ୍ରହଣ କରିବା ପାଇଁ ସହଯୋଗୀ ନିଯୁକ୍ତି କରିବା ଦରକାର ହୁଏ ।

ସ୍କୁଲ ପାଣ୍ଠିର ସ୍ୱଚ୍ଛତା ଦୃଷ୍ଟିରୁ ଅତି କମ୍ ଖର୍ଚ୍ଚରେ କିପରି ନାଟକ ବା ନାଟିକା ସୁନ୍ଦର ଭାବରେ ମଞ୍ଚସ୍ଥ ହୋଇପାରିବ ସେଥି ନିମନ୍ତେ ନିର୍ଦ୍ଦେଶକ ତଥା ପ୍ରଯୋଜକଙ୍କୁ ଯୋଜନା କରିବାକୁ ପଡିଥାଏ । ପରବର୍ତ୍ତୀ କାର୍ଯ୍ୟ ହେଲା, ଉପଯୁକ୍ତ ନାଟକ ବା ନାଟିକା ନିର୍ବାଚନ କରିବା । ସ୍କୁଲରେ ଅଭିନୀତ ନାଟକ ପିଲାମାନଙ୍କଦ୍ୱାରା ଏବଂ ପିଲାମାନଙ୍କ ପାଇଁ ଅନୁଷ୍ଠିତ ହେଉଥିବାରୁ ଏଥିରେ ସେମାନଙ୍କର ମନୋରଞ୍ଜନ ତଥା ଶିକ୍ଷାକୁ ଦୃଷ୍ଟିରେ ରଖି ନାଟକ ନିର୍ବାଚନ କରାଯିବା ଉଚିତ୍ । ଉଦାହରଣ ସ୍ୱରୂପ, ସେମାନଙ୍କ ପାଠ୍ୟ ପୁସ୍ତକ ମଧ୍ୟରୁ କୌଣସି ଏକାଙ୍କିକା ଅଥବା ପାଠ୍ୟ ପୁସ୍ତକ ଅନ୍ତର୍ଭୁକ୍ତ କୌଣସି କାହାଣୀ କିମ୍ବା କବିତାର ନାଟ୍ୟରୂପ (ଛାତ୍ରଛାତ୍ରୀ ଅଥବା ଶିକ୍ଷକଙ୍କଦ୍ୱାରା ପ୍ରସ୍ତୁତ) ଅଭିନୟ କଲେ ତାହା ଛାତ୍ରଛାତ୍ରୀମାନଙ୍କର ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଶିକ୍ଷା ଲାଭରେ ମଧ୍ୟ ସହାୟକ ହେବ ।

## ୨. ଅଭିନେତା ଅଭିନେତ୍ରୀ ଚୟନ :

ନାଟକ ନିର୍ବାଚନ ପରେ ପ୍ରଯୋଜକ ନାଟକର ପ୍ରତ୍ୟେକ ଚରିତ୍ର ପାଇଁ ଆଗ୍ରହୀ ଛାତ୍ରଛାତ୍ରୀମାନଙ୍କ ଅଭିନେତା, ଅଭିନେତ୍ରୀ ଭାବେ ନିର୍ବାଚନ କରନ୍ତି । ଶିକ୍ଷକ (ନିର୍ଦ୍ଦେଶକ) ତାଙ୍କର ସମସ୍ତ ଛାତ୍ରଛାତ୍ରୀଙ୍କର ଚଳିଚଳନ, କଥାବାର୍ତ୍ତା, ଚରିତ୍ରଗତ

ଗୁଣ, ଢଙ୍ଗ ଢାଙ୍ଗ, ବ୍ୟବହାର ଆଦି ସହିତ ସୁପରିଚିତ ଥିବାରୁ ଏବଂ ତାଙ୍କ ନିକଟରେ ଶତାଧିକ ଛାତ୍ରଛାତ୍ରୀ ଥିବାରୁ ନାଟକର କେତୋଟି ଚରିତ୍ର ପାଇଁ ଅଭିନେତା, ଅଭିନେତ୍ରୀ ନିର୍ବାଚନ କଷ୍ଟସାଧ ହୁଏ ନାହିଁ ।

## ୩. ନାଟ୍ୟାଭ୍ୟାସ (Rehearsal)

ନାଟ୍ୟ ପ୍ରଯୋଜନାର ପରବର୍ତ୍ତୀ ସୋପାନ ହେଲା ଆଖଡା ବା ନାଟ୍ୟାଭ୍ୟାସ (Rehearsal) । ଏହି ଅଭ୍ୟାସ ପାଇଁ ସ୍କୁଲରେ ଥିବା ସ୍ଥାୟୀ ମଞ୍ଚ କିମ୍ବା ସ୍କୁଲ-ହଲ ଅଥବା ଶ୍ରେଣୀ ଗୃହ କିମ୍ବା ସ୍କୁଲ ବାରଣ୍ଡାକୁ ବ୍ୟବହାର କରାଯାଇପାରେ ।

ନାଟ୍ୟାଭ୍ୟାସକୁ ସାଧାରଣତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ; ଯଥା: ଅଭିନେତାଙ୍କର **ପଠନ ଅଭ୍ୟାସ,** ଅଭିନେତାଙ୍କର ଦଣ୍ଡାୟମାନ ଅବସ୍ଥାରେ ସଂଳାପ ପରିବେଷଣ ସହ **ଅଭିନୟ ଅଭ୍ୟାସ** ଓ ଶେଷରେ ମଞ୍ଚ ମଧ୍ୟରେ ଗମନାଗମନ ଅଥବା **ଗତି ପ୍ରକୃତିର ଅଭ୍ୟାସ** ।

ପଠନ ଅଭ୍ୟାସ ତିନିଗୋଟି ସୋପାନରେ ବିଭକ୍ତ । ପ୍ରଥମ-ପଠନ ପର୍ଯ୍ୟାୟରେ ନିର୍ଦ୍ଦେଶକ, ଅଭିନେତା ଓ ଅଭିନେତ୍ରୀମାନଙ୍କଦ୍ୱାରା ନାଟକଟି ଆମୂଳଚୂଳ ପଠନ କରାଇ ସେମାନଙ୍କର ଦୁର୍ବୋଧ ହେଉଥିବା ପ୍ରତ୍ୟେକ ବାକ୍ୟ ଓ ଶବ୍ଦର ଅର୍ଥ ବୁଝାନ୍ତି ଏବଂ ଠିକ୍ ପଠନ, ଶୁଦ୍ଧ ଉଚ୍ଚାରଣ ଓ ବିରାମ ଚିହ୍ନଗୁଡିକ ଉପରେ ଗୁରୁତ୍ୱ ଆରୋପ କରନ୍ତି । ଅଭିନେତା ଅଭିନେତ୍ରୀଙ୍କର ପଠନ ଓ ଉଚ୍ଚାରଣ ସମ୍ପୂର୍ଣ୍ଣ ନିର୍ଭୁଲ ହେବା ପର୍ଯ୍ୟନ୍ତ, ଏହି ଅଭ୍ୟାସ ଲାଗି ରହିଥାଏ ।

ଏହା ପରେ ଦ୍ୱିତୀୟ ପର୍ଯ୍ୟାୟ ପଠନ ଆରମ୍ଭ ହୁଏ । ପ୍ରଥମ ପର୍ଯ୍ୟାୟ ସମୟରେ ଅଭିନେତା ଅଭିନେତ୍ରୀମାନେ ନିଜ ନିଜର ଚରିତ୍ର ଓ ସହଯୋଗୀ ଚରିତ୍ରମାନଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ ସମ୍ପର୍କରେ କିଛି କିଛି ଧାରଣା ଲାଭକରି ସାରିଥାନ୍ତି । ତେଣୁ ଦ୍ୱିତୀୟ ପର୍ଯ୍ୟାୟ ବେଳେ ନିର୍ଦ୍ଦେଶକ ପ୍ରତ୍ୟେକ ଚରିତ୍ର ସମ୍ପର୍କରେ ନିଜର ଦୃଷ୍ଟିକୋଣ ଓ ଅଭିନେତାର ନିଜସ୍ୱ ଦୃଷ୍ଟିକୋଣକୁ ବିଶ୍ଳେଷଣ କରି ନିର୍ଦ୍ଦିଷ୍ଟ ଚରିତ୍ର ସମ୍ପର୍କରେ ଚୂଡାନ୍ତ ରୂପରେଖ ପ୍ରଦାନ କରିଥାଆନ୍ତି । ଉଲ୍ଲେଖ କରାଯାଇପାରେ ଯେ ଶିକ୍ଷକ ସବୁବେଳେ ନିଜର ମତକୁ ଛାତ୍ରଛାତ୍ରୀମାନଙ୍କ ଉପରେ ଲଦି ନଦେଇ ବରଂ ସେମାନଙ୍କ ମତାମତକୁ ଗ୍ରହଣ କରି ତାକୁ ରୂପରେଖ ଦେବା ଉଚିତ୍ ।

ତୃତୀୟ ପର୍ଯ୍ୟାୟ କାଳରେ ନିର୍ଦ୍ଦେଶକ ଅଭିନେତାମାନଙ୍କୁ ଚରିତ୍ରର ବିଶେଷତ୍ୱ ଅନୁଯାୟୀ ପ୍ରତ୍ୟେକ ସଂଳାପରେ ଥିବା ଭାବର ଯଥାଯଥ ପରିସ୍ଫୁଟନ ପାଇଁ କଣ୍ଠସ୍ୱରର

ଉପଯୁକ୍ତ ନିୟନ୍ତ୍ରଣ (Voice Modulation) ନିମନ୍ତେ ନିର୍ଦ୍ଦେଶ ଦିଅନ୍ତି । ଏହି ଅଭ୍ୟାସ ମଧ୍ୟ ଦୀର୍ଘ ସମୟ ଚଳାଇବା ଆବଶ୍ୟକ ।

ଏହାପରେ ଆରମ୍ଭ ହୁଏ ଦଣ୍ଡାୟମାନ ଅବସ୍ଥାରେ ଅଭିନୟ ଅଭ୍ୟାସ । ଏହି ପ୍ରକାର ଅଭ୍ୟାସ କାଳରେ ଅଭିନେତାମାନେ ନିଜ ନିଜ ସ୍ଥାନରେ ଦଣ୍ଡାୟମାନ ରହି ସଂଳାପ ପରିବେଷଣ ଓ ସଂଳାପ ପରିବେଷଣ ସମୟର ଅଙ୍ଗଭଙ୍ଗୀ ଓ ମୁଖଭଙ୍ଗୀ କରିଥାଆନ୍ତି ଏବଂ ନିର୍ଦ୍ଦେଶକ ସେମାନଙ୍କ ଅଙ୍ଗଭଙ୍ଗୀ ଓ ମୁଖଭଙ୍ଗୀକୁ ଉପଯୁକ୍ତ ଭାବେ ନିୟନ୍ତ୍ରଣ କରନ୍ତି । ବାରମ୍ବାର ଏହି ଅଭ୍ୟାସ କରିବା ଫଳରେ ସଂଳାପ ପରିବେଷଣ କାଳରେ ଆବଶ୍ୟକ ସମସ୍ତ ମୁଖଭଙ୍ଗୀ ଓ ଅଙ୍ଗଭଙ୍ଗୀ ସମୂହ ଅଭିନେତାଙ୍କର ଅଭ୍ୟାସଗତ ହୋଇଯାଏ । ଫଳରେ ଅଭିନୟ ବାସ୍ତବ ହୁଏ ।

ଏଠାରେ ଗୋଟିଏ କଥା କହିବା ଆବଶ୍ୟକ ମନେହୁଏ । ପ୍ରତ୍ୟେକ ଥର Rehearsal ସମୟରେ ନାଟକରେ ଅଭିନୟ କରୁଥିବା ସମସ୍ତ ଅଭିନେତା ଉପସ୍ଥିତ ଥିବା ଆବଶ୍ୟକ । ଅନେକ ସମୟରେ କେତେକ ଅଭିନେତାଙ୍କ ଅନୁପସ୍ଥିତି ଯୋଗୁଁ proxy ଦେଇ Rehearsal କରାଯାଏ । ଏହାଦ୍ୱାରା ନାଟକ ଅଭିନୟ ସଫଳ ହୁଏ ନାହିଁ । ଶୃଙ୍ଖଳା ବିନା ସଫଳ ନାଟକ ଅଭିନୟ ଅସମ୍ଭବ । ଶୃଙ୍ଖଳା ହିଁ ନାଟକର ମୂଳମନ୍ତ୍ର ।

## ୪. ରଙ୍ଗଭୂମିରେ ଅଭିନୟର ସ୍ଥାନ : (ଚିତ୍ର ୮ ଦ୍ରଷ୍ଟବ୍ୟ)

ନାଟ୍ୟାଭ୍ୟାସର ପରବର୍ତ୍ତୀ ସୋପାନ ହେଲା ମଞ୍ଚ ଉପରେ ଗମନାଗମନ ଓ ଗତି ପ୍ରକୃତିର ଅଭ୍ୟାସ । ଏହି ପର୍ଯ୍ୟାୟରେ ଚରିତ୍ରମାନେ ମଞ୍ଚରେ ଆବଶ୍ୟକ ଭିନ୍ନ ଭିନ୍ନ ଗତି ଓ ଭଙ୍ଗୀ ସହିତ ସଂଳାପର ଯଥାଯଥ ସମନ୍ୱୟ ରକ୍ଷା ଅଭ୍ୟାସ କରିଥାନ୍ତି । ଏହି ପର୍ଯ୍ୟାୟରେ ଅଭିନେତା ଅଭିନେତ୍ରୀଙ୍କୁ ରଙ୍ଗଭୂମିର ବିଭିନ୍ନ ଅଞ୍ଚଳର ଭିନ୍ନ ଭିନ୍ନ ଗୁରୁତ୍ୱ ଏବଂ ପରିସ୍ଥିତି ଓ ସଂଳାପର ଆବଶ୍ୟକତାନୁଯାୟୀ ଚରିତ୍ରମାନଙ୍କର ସ୍ଥାନ ଓ ଭଙ୍ଗୀ ପରିବର୍ତ୍ତନର କୌଶଳ ସମ୍ବନ୍ଧରେ ଅବହିତ କରାଇବା ଆବଶ୍ୟକ ।

ରଙ୍ଗଭୂମିରେ ନିମ୍ନ ମଧ୍ୟରଙ୍ଗ ଅଞ୍ଚଳଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ । ଏହାର ଆବେଦନ ଅତ୍ୟନ୍ତ ତୀବ୍ର ଏବଂ ପ୍ରଭାବଶାଳୀ । ଏହି ଅଞ୍ଚଳରେ ବିଦ୍ରୋହ, ହତ୍ୟା, ନିଷ୍ଠୁରତା, ଅତ୍ୟାଚର ଆଦିର ଅଭିନୟ କରାଯାଇପାରେ ।

ଗୁରୁତ୍ୱ ଦୃଷ୍ଟିରୁ ଦ୍ୱିତୀୟ ସ୍ଥାନର ଅଧିକାରୀ ଉର୍ଦ୍ଧ୍ୱ ମଧ୍ୟରଙ୍ଗ ଅଞ୍ଚଳ । ଏଠାରେ ପ୍ରେମ, ରାଜକୀୟ ଓ ସଂଭ୍ରାନ୍ତ ବଂଶୀୟ ଆଡମ୍ବର ପ୍ରଦର୍ଶନ ଆଦିର ଅଭିନୟ କରାଯାଇପାରେ ।

ପରବର୍ତ୍ତୀ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ହେଲା ନିମ୍ନ ଦକ୍ଷିଣ ରଙ୍ଗ । ଏହି ଅଞ୍ଚଳକୁ ଆନ୍ତରିକତା, ବିଶ୍ୱାସ, ସ୍ୱୀକାରୋକ୍ତି ତଥା ବନ୍ଧୁତ୍ୱ ପ୍ରଦର୍ଶନର ଅଭିନୟ ଲାଗି ବ୍ୟବହାର କରାଯାଇଥାଏ ।

ସେହିପରି ନିମ୍ନ ବାମରଙ୍ଗ ଅଞ୍ଚଳରେ ବିପରୀତଧର୍ମୀ କାର୍ଯ୍ୟ ଅଭିନୀତ ହୁଏ । ଯଥା: ଅବିଶ୍ୱାସ, ଷଡଯନ୍ତ୍ର, ଛଳନା ଓ କୁଟିଳତା ।

ଗୁରୁତ୍ୱ ଦୃଷ୍ଟିରୁ ପରବର୍ତ୍ତୀ ଅଞ୍ଚଳ ହେଲା ଉର୍ଦ୍ଧ୍ୱ ଦକ୍ଷିଣରଙ୍ଗ ଅଞ୍ଚଳ । ଏହି ଅଞ୍ଚଳରେ କାଳ୍ପନିକ ଚିନ୍ତା ଓ ଅବାସ୍ତବତାର ଅଭିନୟ କରାଯାଇଥାଏ ।

ଗୁରୁତ୍ୱ ଦୃଷ୍ଟିରୁ ସବୁଠାରୁ ଦୁର୍ବଳ ଅଂଶ ହେଉଛି ଉର୍ଦ୍ଧ୍ୱ ବାମରଙ୍ଗ ଅଞ୍ଚଳ । ଏଠାରେ ସ୍ୱପ୍ନ, କୃତିମତା, ଶୀତଳତା ଆଦିର ଅଭିନୟ କରାଯାଇଥାଏ ।

ମୋଟ ଉପରେ କହିବାକୁ ଗଲେ ଅଭିନୟ ଦୃଷ୍ଟିକୋଣରୁ ରଙ୍ଗଭୂମିର ଉର୍ଦ୍ଧ୍ୱାଂଶଠାରୁ ନିମ୍ନାଂଶ ଅଧିକ ସବଳ, ଗୁରୁତ୍ୱପୂର୍ଣ୍ଣ ଓ ଭାବବ୍ୟଞ୍ଜକ ।




(ନାଟ୍ଟ ରଠନଭିଓ ରଠିଭୁଷର :7 ତ୍ରିଚି)

## ୫. ଅଭିନେତା ଅବସ୍ଥାନ : ଚିତ୍ର ୯ ଦ୍ରଷ୍ଟବ୍ୟ

ଦର୍ଶକଙ୍କ ନିକଟରେ ଚରିତ୍ରର ଗୁରୁତ୍ୱ ବୃଦ୍ଧି ବା ହ୍ରାସ କରିବାକୁ ହେଲେ ରଙ୍ଗଭୂମିରେ ତା'ର ଅବସ୍ଥିତିକୁ ତଦନୁଯାୟୀ ନିର୍ଦ୍ଧାରଣ କରିବାକୁ ପଡେ । କାରଣ ଗୋଟିଏ ବିନ୍ଦୁ ଯେମିତି ଗୋଟିଏ କାଗଜ ଉପରେ ୩୬୦° କୋଣ ଅଙ୍କନ କରିପାରେ ସେହିପରି ଜଣେ ଅଭିନେତା ମଞ୍ଚ ଉପରେ ମଧ୍ୟ ୩୬୦ ଡିଗ୍ରୀ କୋଣ ଅଙ୍କନ କରି ନିଜଶରୀର ଘରିପଟେ ଘଡିରେ କଣ୍ଟା ପରି ଡାହାଣକୁ ବା ବାମକୁ ବୁଲିପାରେ ।




(ଚିତ୍ର ୯ ଅଭିନେତା ଶରୀରର ଅବସ୍ଥାନ)

ଘଡିରେ ୧୨ଟା ବାଜିଲେ ଯେପରି ଘଡିର କଣ୍ଟା ଶୂନ୍ୟରୁ ଆରମ୍ଭ ହୁଏ । ସେହିପରି ଅଭିନେତା ଯଦି ଦର୍ଶକକୁ ପଛକରି ଠିଆ ହୁଏ, ଏବଂ ତାକୁ ଯଦି ଶୂନ୍ୟ ଡିଗ୍ରୀ ବା ୩୬୦°ଡିଗ୍ରୀ ଧରାଯାଏ । ତା'ହେଲେ ସେହି ସ୍ଥିତି ହିଁ ଅଭିନେତାର ସବୁଠାରୁ ଦୁର୍ବଳ ସ୍ଥିତି କାରଣ ସେପରି ସ୍ଥଳରେ ଦର୍ଶକ ଅଭିନେତାର ମୁଖ ମଣ୍ଡଳ, ତା'ର Expression ର ପ୍ରତିକ୍ରୀୟା ଦେଖିପାରେନାହିଁ । ଏହାକୁ ଅଭିନେତାର Close ପୋଜିସନ୍ ବୋଲି କୁହାଯାଏ । ସେହିଠାରୁ ଆରମ୍ଭ କରି ଅଭିନେତା କ୍ରମେ କ୍ରମେ ଡାହାଣକୁ (Clockwise) ବୁଲିଲେ ୪୫°ଡିଗ୍ରୀରେ ଯେତେବେଳେ ନିଜ ଶରୀର ସ୍ଥାପନ କରେ ତାହାକୁ ଶରୀରର ଦୁଇ ତୃତୀୟାଂଶ ପଛପଟ ଡାହାଣ ପାର୍ଶ୍ୱ ଅବସ୍ଥିତି କୁହାଯାଏ । ଏପରି ସ୍ଥଳରେ ଦର୍ଶକ ଅଭିନେତାର ଡାହାଣ ମୁଖ ମଣ୍ଡଳର ସ୍ୱଳ୍ପ ଅଂଶ ହିଁ ଦେଖିପାରେ । ସେହିପରି ଅଭିନେତାର ୯୦°ଡିଗ୍ରୀ ଅବସ୍ଥିତିରେ ଦର୍ଶକ ତା'ର ଡାହାଣ ପଟର ଅର୍ଦ୍ଧାଂଶ ଦେଖିପାରେ । ଏହାକୁ ଶରୀରର ଡାହାଣ Profile ଅବସ୍ଥିତି କୁହାଯାଏ । ତା'ପରେ ୧୩୫°ଡିଗ୍ରୀ ଅବସ୍ଥାନରେ ଦର୍ଶକ ଅଭିନେତାର ଦ୍ୱିତୃତୀୟାଂଶ ମୁଖମଣ୍ଡଳ ଦେଖିପାରେ । ଏବଂ ୧୮୦°ଡିଗ୍ରୀ ଅବସ୍ଥାନରେ ଦର୍ଶକ ଅଭିନେତାକୁ ସ୍ପଷ୍ଟଭାବେ ସମ୍ପୂର୍ଣ୍ଣ ଦେଖିପାରେ । ଏହାକୁ ଅଭିନେତାର Open position କହନ୍ତି । ଏହାହିଁ ଅଭିନେତାର ଶ୍ରେଷ୍ଠ ଅବସ୍ଥିତି । ଏହାପରେ ସେ ପୁଣି ଡାହାଣକୁ ବୁଲି

୨୨୫°ଡିଗ୍ରୀର ଅନୁରୂପ ବାମପାର୍ଶ୍ୱର ଅବସ୍ଥିତି ପ୍ରକାଶ କରେ । ପରେ ପୁଣି ଡାହାଣକୁ ବୁଲି ୨୭୦°ଡିଗ୍ରୀରେ Profile Left ଅବସ୍ଥିତିରେ ପହଞ୍ଚେ । ପରବର୍ତ୍ତୀ ପର୍ଯ୍ୟାୟରେ ୩୧୫° ଡିଗୀରେ ପହଞ୍ଚି ୪୫୦ଡିଗ୍ରୀର ଅନୁରୂପ ଦ୍ବିତୃତୀୟାଂଶ ବାମ ଶରୀର ପ୍ରଦର୍ଶନ ସ୍ଥିତିରେ ଅବସ୍ଥାନ କରେ ଓ ପରିବେଶରେ ୩୬୦°ଡିଗ୍ରୀ ବା ଶୂନ୍ୟ ଡିଗ୍ରୀରେ ପହଞ୍ଚି Close Position ରେ ସ୍ଥିର ହୁଏ ।

ସଂଳାପ ଓ ଅଭିନୟର ଶୈଳୀ ସହିତ ଖାପ ଖୁଆଇ ଅଭିନେତା ନିଜର ଶାରୀରିକ ଅବସ୍ଥିତିକୁ ବ୍ୟବହାର କରିଥାଆନ୍ତି ।

ପୂର୍ବୋକ୍ତ କୌଶଳଗୁଡ଼ିକ ବ୍ୟତୀତ ନିର୍ଦ୍ଦେଶକ ଆବଶ୍ୟକ ବୋଧକଲେ ଅନ୍ୟ ଉପାୟରେ ମଧ୍ୟ କୌଣସି ଚରିତ୍ର ଉପରେ ଅଧିକ ପ୍ରାଧାନ୍ୟ ଆରୋପ କରିପାରିନ୍ତି । ଫଳରେ ଉକ୍ତ ଚରିତ୍ରଟି ପ୍ରାଧାନ୍ୟ ଲାଭକରେ । ଏହି ଉପାୟଗୁଡ଼ିକ ମଧ୍ୟରୁ କେତୋଟି ମୁଖ୍ୟ ଉପାୟ ଏଠାରେ ଉଲ୍ଲେଖ କରାଗଲା ।

(୧) ରଙ୍ଗଭୂମିର ଉଚ୍ଚସ୍ତରରେ ଚରିତ୍ରଟିର ଅବସ୍ଥାପନ;

(୨) ଅନ୍ୟ ଚରିତ୍ରମାନଙ୍କଠାରୁ ଦୂରତ୍ୱ ରକ୍ଷାକରି କୌଣସି ଚରିତ୍ରର ଏକାନ୍ତ ଅବସ୍ଥାନ;

(୩) କ୍ରମଶଃ ସମ୍ମୁଖଭାଗକୁ ଚରିତ୍ରଟିର ଆଗମନ

(୪) ଅନ୍ୟ ଚରିତ୍ରମାନଙ୍କଦ୍ୱାରା ଉତ୍ପନ୍ନ କୋଣର କେନ୍ଦ୍ରସ୍ଥଳରେ ଚରିତ୍ରଟିର ଅବସ୍ଥାନ;

(୫) ଏକ ନିର୍ଦ୍ଦିଷ୍ଟ ଚରିତ୍ର ପ୍ରତି ଅନ୍ୟ ଚରିତ୍ରମାନଙ୍କର ଉତ୍ସୁକତାର ସହିତ ଦୃଷ୍ଟିପାତ ।

## ୬. ନାଟକ ଅଭିନୟର ପ୍ରଯୋଜନା :

ଚରିତ୍ରାନୁଯାୟୀ ପୋଷାକ ବ୍ୟବସ୍ଥା, ଦୃଶ୍ୟସଜ୍ଜା ପରିକଳ୍ପନା, ହସ୍ତୋପକରଣର ଆୟୋଜନ କରିବା, ରୂପସଜ୍ଜା ଓ ଆଲୋକର ଆୟୋଜନ କରିବାର ଦାୟିତ୍ୱ ମଧ୍ୟ ନିର୍ଦ୍ଦେଶକଙ୍କ ତତ୍ତ୍ୱାବଧାନରେ ତାଙ୍କର ରୁଚି ଅନୁଯାୟୀ କରଯିବା ଆବଶ୍ୟକ ।

ଛାତ୍ରଛାତ୍ରୀ, ଅନ୍ୟ ଶିକ୍ଷକ ଶିକ୍ଷୟିତ୍ରୀ ଓ ଅଭିଭାବକଙ୍କ ସକ୍ରିୟ ସହଯୋଗରେ ପ୍ରଯୋଜକଙ୍କୁ ଏହି ସବୁ କାର୍ଯ୍ୟ ସମ୍ପାଦନ କରିବା ସହଜ ସାଧ୍ୟ ହୁଏ । ସଭିଏଁ ସୃଜନଶୀଳ କାର୍ଯ୍ୟ ସମ୍ପାଦନର ଆନନ୍ଦ ଉପଭୋଗ କରିବାର ସୁଯୋଗ ପାଆନ୍ତି ।

ଏହି ସମସ୍ତ ପ୍ରସ୍ତୁତି ଶେଷରେ ଓ ନାଟକ ଅଭିନୟ ପୂର୍ବରୁ ଏକାଧିକବାର ପ୍ରାକ୍ ପ୍ରଯୋଜନାର ଅଭ୍ୟାସ (final or stage rehearsal) କରାଯିବା ଉଚିତ । ଏହି ଚୂଡାନ୍ତ ଅଭ୍ୟାସ ସମୟରେ ଚରିତ୍ରାନୁରୂପ ପୋଷାକ, ଅଳଙ୍କାର, ରୂପସଜ୍ଜା, ହସ୍ତୋପକରଣ, ଏପରିକି ଆଲୋକ ଆଦିର ଅବିକଳ ବ୍ୟବହାର କରାଯିବ ଏବଂ ପ୍ରୟୋଜନ ବୋଧ ହେଲେ ଏକାଧିକବାର ଏହିପରି ଅଭ୍ୟାସ କରାଯାଇ ପାରେ । ଫଳରେ ନାଟ୍ୟ ଅଭିନୟ ସମୟରେ କୌଣସି ଭୁଲ ତ୍ରୁଟି ହେବାର ସମ୍ଭବନା ରହିବ ନାହିଁ ଏବଂ ଅଭିନେତାମାନଙ୍କର ପୋଷାକ ପରିଚ୍ଛଦ ଓ ରୂପସଜ୍ଜା ସହିତ ଅଭିନୟ କରିବାର ଅଭ୍ୟାସ ମଧ୍ୟ ହୋଇଯିବ ।

## ୭. ଯାତ୍ରା ଓ ପାଲା :

'ଯାତ' ବା 'ଯାତରା' ଶବ୍ଦ ବିଭିନ୍ନ ପର୍ବପର୍ବାଣି ସହିତ ଜଡିତ ଥିବାରୁ ଆମେ ପର୍ବପର୍ବାଣି ଓ ଉତ୍ସବକୁ "ଜାନିଯାତ୍ରା" ବୋଲି କହିଥାଉ । ପୂର୍ବେ ଦେବତାମାନଙ୍କର ପ୍ରଶସ୍ତିଗାନ କରିବା ଉଦ୍ଦେଶ୍ୟରେ ଗାଁଗଣ୍ଡା ଓ ପୁରପଲ୍ଲୀରେ ଅନେକ ନାଟକାଭିନୟ ହେଉଥିଲା । ଏ ସମସ୍ତ ଥିଲା ଯାତ୍ରାଭିନୟ ଅନ୍ତର୍ଭୁକ୍ତ । କିନ୍ତୁ ପରବର୍ତ୍ତୀ କାଳରେ ଏହି ନାଟ୍ୟାଭିନୟ କ୍ରମଶଃ ଏକ ବିଶେଷ ଦେଶଜ ପଦ୍ଧତି ଗ୍ରହଣ କରି ଯାତ୍ରା ନାମରେ ପରିଚିତ ହେଲା ଏବଂ ଓଡ଼ିଶାର ଦେଶଜ ଯାତ୍ରା ବହୁଳ ଜନପ୍ରିୟତା ଅର୍ଜନ କରି ଓଡ଼ିଶା ଓ ଓଡ଼ିଶା ବାହାରେ ପ୍ରଶଂସିତ ହେଲା ।

ଏହି ଯାତ୍ରା-ନାଟକ, ଯାହା ଆଜି ଲୋକମୁଖରେ "ଅପେରା" ନାମରେ ଖ୍ୟାତ, ତାହାର ଆଧୁନିକ ରୂପ ଓ ଅତୀତର ରୂପ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି ।

ପୂର୍ବେ ଯାତ୍ରାର କଥାବସ୍ତୁ ପୁରାଣ, ଇତିହାସ ଓ କିମ୍ବଦନ୍ତୀରୁ ଗ୍ରହଣ କରାଯାଉଥିଲା । କିନ୍ତୁ ବର୍ତ୍ତମାନ ଯାତ୍ରାର କଥାବସ୍ତୁ କାଳ୍ପନିକ, ସାମାଜିକ, ରହସ୍ୟ ମୂଳକ, ବୈଜ୍ଞାନିକ, ଏପରିକି ରାଜନୈତିକ ଘଟଣା ଉପରେ ମଧ୍ୟ ଆଧାରିତ ହେଉଛି । ସେହିପରି ଯାତ୍ରାର ସଂଳାପ ପ୍ରଥମେ ଗୀତିମୟ, ପରେ ଅମିତ୍ରାକ୍ଷର ଛନ୍ଦବଦ୍ଧ ହୋଇ ଏବେ ଅଧିକାଂଶ ସ୍ଥଳରେ ଗଦ୍ୟଛନ୍ଦରେ ରଚିତ ହେବାର ଲକ୍ଷ୍ୟ କରାଯାଉଛି ।

ଯାତ୍ରାର ମଞ୍ଚ ସାଧାରଣତଃ ମୁକ୍ତାକାଶ-ମଞ୍ଚ, ଯାହାର ଚାରିପଟେ ଦର୍ଶକଙ୍କର ବସିବା ପାଇଁ ସ୍ଥାନ ରହିଥାଏ । ଦର୍ଶକଙ୍କ ମଧ୍ୟଦେଇ ଅନତିଦୂରରେ ରହିଥିବା ସାଜଗୃହ (make-up room) ପର୍ଯ୍ୟନ୍ତ ଏକ ସରୁ ରାସ୍ତା ଥାଏ । ଏହାକୁ **ପୁଷ୍ପପଥ** କୁହାଯାଏ । ଏହି ପଥରେ ଅଭିନେତା ଅଭିନେତ୍ରୀ ଆଦି ଗମନାଗମନ କରିଥାନ୍ତି । ଆଜିକାଲି କେତେକ ସ୍ଥାନରେ ଅଭିନେତା ଅଭିନେତ୍ରୀଙ୍କର ଆଗମନ ପାଇଁ ଗୋଟିଏ ପୁଷ୍ପପଥ ଓ

ପ୍ରସ୍ଥାନ ପାଇଁ ଅନ୍ୟ ଏକ ପୁଷ୍ପପଥର ମଧ୍ୟ ବ୍ୟବହାର କରାଯାଉଛି । ପୁଷ୍ପପଥର ଠିକ୍ ସମ୍ମୁଖରେ କିମ୍ବା ମଞ୍ଚକୁ ଛାଡି ମଞ୍ଚର ଗୋଟିଏ ପଟେ କିମ୍ବା ମଞ୍ଚର ତିନିପଟେ ସଙ୍ଗୀତଶିଳ୍ପୀ ଏବଂ ସ୍ମାରକ ଆଦି ଆସନ ଗ୍ରହଣ କରିଥାଆନ୍ତି । ଏମାନଙ୍କ ବ୍ୟତୀତ କଳାପୋଷାକ ପରିହିତ ଏକ ବା ଦୁଇ ଅ-ଚରିତ୍ର ଥାଆନ୍ତି, ଯେଉଁମାନେ ଅଭିନୟ କରନ୍ତି ନାହିଁ ମାତ୍ର ପ୍ରତ୍ୟେକ ଦୃଶ୍ୟ ପରେ ଅଭିନେତାଙ୍କର କୌଣସି ଉପକରଣ ମଞ୍ଚରେ ପଡି ରହିଥିଲେ ତାହାକୁ ପୁଣି ସାଜଗୃହକୁ ଘେନି ଆସିଥାଆନ୍ତି । ଯାତ୍ରା-ମଞ୍ଚରେ ଦୃଶ୍ୟପଟ ବା ଦୃଶ୍ୟ ସଜ୍ଜା ଦେଖାଯାଏ ନାହିଁ । ଗୋଟିଏ ମାତ୍ର ଚୌକି ମଞ୍ଚରେ ରହିଥାଏ ଏବଂ ଏହା କେତେବେଳେ ରାଜାଙ୍କ ସିଂହାସନ ତ କେତେବେଳେ ଜଙ୍ଗଲର କାଠଖଣ୍ଡ, କେତେବେଳେ ଖଟୁଲି ତ କେତେବେଳେ ଲୁଚିବା ସ୍ଥାନ ଭାବରେ ବ୍ୟବହୃତ ହୁଏ ।

ଯାତ୍ରାରେ ସାଧାରଣତଃ ସାହାନାଇ, ତୁରୀ, ମହୁରୀ, ମୃଦଙ୍ଗ, ଗିନି, ବେହେଲା, ବଂଶୀ, ମର୍ଦ୍ଦଳ, ଘଣ୍ଟ, ହାରମୋନିଅମ୍ ଆଦିର ବ୍ୟବହାର କରାଯାଉଥିଲା । ଆଜିକାଲି କ୍ଲାରିଓନେଟ୍, ବଙ୍ଗୋ, ଟ୍ରଙ୍ଗୋ ଆଦିର ମଧ୍ୟ ବ୍ୟବାହର କରାଯାଉଛି ।

ଚରିତ୍ରମାନଙ୍କର ରୂପସଜ୍ଜା ସାଧାରଣତଃ ଗାଢ ରଙ୍ଗରେ ଓ ବଡ ଆକାରରେ କରାଯାଇଥାଏ । ପୋଷାକରେ ମଧ୍ୟ ଅଧିକ ଝକଟକ୍ୟକୁ ପ୍ରାଧାନ୍ୟ ଦିଆଯାଇଥାଏ । ଏହାଦ୍ୱାରା ଅଭିନେତାର ମୁଖମଣ୍ଡଳ ଓ ସମଗ୍ର ଶରୀର ବହୁଦୂର ପର୍ଯ୍ୟନ୍ତ ଦୃଶ୍ୟମାନ ହୋଇଥାଏ ।

ଏବେ ଯାତ୍ରାଭିନୟ ପାଇଁ ବିଦ୍ୟୁତ୍ ଆଲୋକର ବ୍ୟବହାର କରାଯାଉଛି ଏବଂ ସମୟ ସମୟରେ ବିଭିନ୍ନ ଆଲୋକର ବର୍ଣ୍ଣାଳୀ ମଧ୍ୟ ବ୍ୟବହୃତ ହେଉଛି ।

ଛାଇ-ଆଲୁଅର ବିଭିନ୍ନ କୌଶଳ ତଥା ଦ୍ୱିତୀୟ ମଞ୍ଚ ସାହାଯ୍ୟରେ ବିଭିନ୍ନ କୌଶଳପୂର୍ଣ୍ଣ ଦୃଶ୍ୟ ପ୍ରଦର୍ଶନ ଦ୍ୱାରା ଯାତ୍ରାକୁ ଅଧିକ ଉନ୍ନତ ଓ ଉପଭୋଗ୍ୟ କରାଗଲାଣି ।

ଯାତ୍ରାରେ କୃତିମ ଶବ୍ଦ ବ୍ୟବହାର ପାଇଁ ଆଜି କାଲି ଡାକବାଜି ଯନ୍ତ୍ର ମଧ୍ୟ ବ୍ୟବହାର କରାଯାଉଛି ।

ଯାତ୍ରା-ନାଟକରେ ବହୁ ଜନସମାଗମ ହେଉଥିବାରୁ ତାହାର ଅଭିନୟ ଶୈଳୀରେ ଗୀତିମୟତା ଓ ବହୁଦୂର ଶବ୍ଦ ପ୍ରକ୍ଷେପଣ କରିବାର ବାଚନ ଶୈଳୀ ଉପରେ ପ୍ରାଧାନ୍ୟ ଦିଆଯାଏ ।

ଯାତ୍ରା ମୁକ୍ତାକାଶ-ମଞ୍ଚରେ ଅଭିନୟ କରାଯାଏ । ଏହି ମଞ୍ଚ ବର୍ଗାକାର, କିମ୍ବା ଗୋଲାକାର ହୋଇଥାଏ । ଦର୍ଶକ ସମାଗମର ଓ ସ୍ଥାନର ଆୟତନ ଅନୁସାରେ

ଏହି ମଞ୍ଚର ଉଚ୍ଚତା ନିରୂପଣ କରଯାଏ । ସମୟ ସମୟରେ ଏହାର ଉଚ୍ଚତା ୫ ଫୁଟ୍ ବା ତହିଁରୁ ଉର୍ଦ୍ଧ୍ୱ ମଧ୍ୟ ହୋଇଥାଏ । ମଞ୍ଚର ଠିକ୍ ଉପର ଅଂଶରେ ସାମିଆନା (ଛାମୁଣ୍ଡିଆ) ବନ୍ଧାଯାଇ ମଞ୍ଚରେ ବ୍ୟବହୃତ ଆଲୋକ ତଥା ଅଭିନୟ କାଳୀନ ଶବ୍ଦକୁ ନିୟନ୍ତ୍ରିତ କରାଯାଏ ।

ଓଡ଼ିଶାର ଯାତ୍ରା ଜଗତକୁ ବୈଷ୍ଣବ ପାଣି, ଗୋପାଳ ଦାସ ଓ ବାଳକୃଷ୍ଣ ମହାନ୍ତିଙ୍କର ଅବଦାନ ଅବିସ୍ମରଣୀୟ ।

ପାଲା- ସମ୍ଭବତଃ ଭକ୍ତି ଯୁଗରେ ପାଲାର ସୃଷ୍ଟି ହୋଇଥିଲା । କାରଣ, ପାଲାର ଆରମ୍ଭ ଓ ଶେଷରେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଦେବତା ସତ୍ୟପୀରଙ୍କର ବନ୍ଦନା କରାଯାଇଥାଏ ।

ପାଲା ସାଧାରଣତଃ ଦୁଇ ପ୍ରକାର, ଠିଆ ପାଲା ଓ ବୈଠକୀ ପାଲା । ଠିଆପାଲାରେ ଗାୟକମଣ୍ଡଳୀ ଛିଡା ହୋଇ ଗାୟନ ପରିବେଷଣ କରୁଥିବା ବେଳେ ବୈଠକୀ ପାଲାରେ ସେମାନେ ଗୋଟିଏ ସ୍ଥାନରେ ବସି ଗାୟନ ପରିବେଷଣ କରିଥାଆନ୍ତି ।

ମହାକାବ୍ୟ, କାବ୍ୟ କିମ୍ବା ପୁରାଣର ଅଂଶବିଶେଷକୁ ପାଲାର କଥାବସ୍ତୁ ରୂପେ ଗ୍ରହଣ କରାଯାଏ ଏବଂ ପାଲା ଗାୟନରେ ନାନା ପ୍ରକାର ଶ୍ଳୋକ, ଛାନ୍ଦ ଅଳଙ୍କାର ଆଦିର ତର୍ଜମା କରାଯାଏ । ଫଳରେ ସମଗ୍ର ପରିବେଶ ସାହିତ୍ୟ ରସରେ ପରିପୂର୍ଣ୍ଣ ହୋଇଯାଏ । ଅବଶ୍ୟ ପାଳିଆମାନେ ନାନା ଢଗଢମାଳି ଓ ଗ୍ରାମ୍ୟ ଗୁଢି ପ୍ରୟୋଗଦ୍ୱାରା ହାସ୍ୟରସ ପରିବେଷଣ କରି ମୂଳ ଘଟଣାର ତୀବ୍ରତାକୁ ସାମୟିକ ଭାବରେ ଲାଘବ କରିଦିଅନ୍ତି ।

ପାଲାରେ ସର୍ବମୋଟ ଛଅଜଣ ଅଭିନେତା ଥାଆନ୍ତି- ପ୍ରଧାନ ଗାୟକ, ଶ୍ରୀପାଳିଆ, ବାୟକ-ପାଳିଆ, ଦୁଇଜଣ ନୃତ୍ୟପାଳିଆ, ଓ ଜଣେ ବିଦୂଷକ ପାଳିଆ । ଗାୟକ ହାତରେ ଗୋଟିଏ ପବିତ୍ର ଚାମର ଓ ଯୋଡିଏ କ୍ଷୁଦ୍ର ମଞ୍ଜିରା ଧରିଥାନ୍ତି । ସେହିପରି ବାୟକ ପାଳିଆଙ୍କ ହାତରେ ଖୋଳ, ଥିଲାବେଳେ ଶ୍ରୀପାଳିଆଙ୍କ ହାତରେ ରାମତାଳି ଓ ଅନ୍ୟମାନଙ୍କ ହାତରେ କରତାଳ ଥାଏ । ବିଦୂଷକ ପାଳିଆ ପ୍ରତ୍ୟେକ କଥାରୁ ହାସ୍ୟରସ ସୃଷ୍ଟିକରୁଥିଲା ବେଳେ ଦୁଇଜଣ ନୃତ୍ୟପାଳିଆ ବିଭିନ୍ନ ପଦ ମଝିରେ ନାନା ଅଙ୍ଗଭଙ୍ଗୀ କରି ପାଳି ଧରି ନାଚୁଥାଆନ୍ତି ।

ଯାତ୍ରା ଭଳି ପାଲା ମଧ୍ୟ ମୁକ୍ତାକାଶ-ମଞ୍ଚରେ ଅଭିନୀତ ହୁଏ । ଆବଶ୍ୟକ ସ୍ଥଳେ ମଞ୍ଚ ଉଚ୍ଚ କରଯାଏ କିମ୍ବା ଦର୍ଶକମାନଙ୍କ ସହିତ ତାହା ଭୂମି ସଂଲଗ୍ନ ହୋଇ

ରହିଥାଏ । ପାଲା ଅଭିନୟ ଲାଗି ବେଶଗୃହର ପ୍ରୟୋଜନ ନ ଥିବାରୁ ପାଲା ମଞ୍ଚରେ ପୁଷ୍ପପଥ ନ ଥାଏ ।

ଗାୟକଙ୍କ ପୋଷାକ ଗଜପତି ରାଜାଙ୍କ ଅନୁରୂପ ହୋଇଥିବା ସ୍ଥଳେ, ଅନ୍ୟମାନଙ୍କର ପୋଷାକ ଅମାତ୍ୟମାନଙ୍କପରି ହୋଇଥାଏ । ଗାୟକଙ୍କ ମୁଣ୍ଡରେ ପଗଡି, କାନରେ କୁଣ୍ଡଳ ଓ ହାତରେ କଙ୍କଣ ଥାଏ । ଗାୟକଙ୍କ ହସ୍ତରେ ଥିବା ପବିତ୍ର ଚାମର ହିଁ ଗାୟକଙ୍କର ମୁଖ୍ୟ ଉପଯୋଗୀ ବସ୍ତୁ । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଭାବରେ ତାହାର ପ୍ରୟୋଗ ହୁଏ । ଯଥା : ଗାୟକ ରାଜା ଭାବରେ ଅଭିନୟ କରୁଥିଲା ବେଳେ ତାହା ଖଡ୍‌ଗ ବା ଦଣ୍ଡଭାବେ ବ୍ୟବହୃତ ହୁଏ, ଗାୟକ ନାଉରୀର ଅବତାରଣା କରୁଥିବା ବେଳେ ଚାମର ହୁଏ କାତ ବା ଆହୁଲା; ସେହିପରି ଗାୟକ କୌଣସି ନାରୀ ଚରିତ୍ରର ଅବତାରଣ କରୁଥିବା ସମୟରେ ଚାମର ହୁଏ ସନ୍ତାନ, ଇତ୍ୟାଦି ।

ଆରମ୍ଭରେ ଗାୟକଙ୍କୁ ଛାଡି ପାଞ୍ଚଜଣ ପାଳିଆ ମଞ୍ଚକୁ ଆସି ଖୋଳ ଓ କରତାଳି ବଜାଇ ନୃତ୍ୟ କରନ୍ତି । ପରେ ଗାୟକ ମଞ୍ଚକୁ ପ୍ରବେଶ କରନ୍ତି । ସେ ପ୍ରଥମେ ବାବା ସତ୍ୟ-ପୀରଙ୍କର ଆଶୀର୍ବାଦ ପ୍ରାର୍ଥନା କରି ତାଙ୍କର ବିଷ୍ଣୁ ଓ ସରସ୍ୱତୀଙ୍କ ବନ୍ଦନା ଗାନକରି ଦର୍ଶକଙ୍କ ଆଶୀର୍ବାଦ କାମନା କରନ୍ତି । ଏହା ପରେ ସେ ବିଷୟବସ୍ତୁ ଆରମ୍ଭ କରିନ୍ତି । ବିଭିନ୍ନ ନୃତ୍ୟଭଙ୍ଗୀ ଓ କଥୋପକଥନ ମାଧ୍ୟମରେ ବିଷୟବସ୍ତୁର କ୍ରମୋନ୍ନତି ଘଟିଥାଏ । ଶେଷରେ 'ସତ୍ୟ-ପୀରଙ୍କ ପ୍ରୀତାର୍ଥେ ଆନନ୍ଦେ ଏକବାର ହରିହରି ବୋଲ' ଉଚ୍ଚାରିତ ହେବା ପରେ ପାଲା ପରିବେଷଣ ସମାପ୍ତ ହୁଏ ।



# ଜନନୀ ଜନ୍ମଭୂମିଷ୍ଚ
## ପାତ୍ର ପରିଚୟ

୧. କୋରସ ୧୦ ଜଣ କୋରସ ଗୋଟିଏ ପ୍ରକାର ପୋଷାକ ପରିଧାନ କରିବେ ।

୨. ଦର୍ଶକ- ୩ ଜଣ ଦର୍ଶକ ବିଭିନ୍ନ ପୋଷାକ ପିନ୍ଧି ସାଧାରଣ ଦର୍ଶକ ଭାବେ ଭିନ୍ନ ଭିନ୍ନ ଜାଗାରେ ଦର୍ଶକଙ୍କ ଭିତରେ ବସିଥିବେ ।

୩. ଦୁର୍ଯ୍ୟୋଧନ- କୌରବ ରାଜପୁତ୍ର

୪. ଯୁଧିଷ୍ଠିର- ପାଣ୍ଡବଙ୍କ ଜ୍ୟେଷ୍ଠପୁତ୍ର

୫. କୃଷ୍ଣ- ଦ୍ୱାରୀକାଧି ପତି

୬. ଶକୁନି - ଦୁର୍ଯ୍ୟୋଧନଙ୍କ ମାତୁଳ

୭. କର୍ଣ୍ଣ - ଅଙ୍ଗରାଜ, ଦୁର୍ଯ୍ୟୋଧନଙ୍କ ମିତ୍ର

୮. ବିଦୁର - କୌରବ ମନ୍ତ୍ରୀ, କୃଷ୍ଣ ଭକ୍ତ

୯. ଅର୍ଜ୍ଜୁନ, ଭୀମ, ନକୁଳ, ସହଦେବ ଆଦି ପାଣ୍ଡବର ୪ ପୁତ୍ର

୧୦. ଧୃତରାଷ୍ଟ୍ର- କୌରବାଧିପତି

୧୧. କୁନ୍ତୀ- ପଣ୍ଡୁ ପତ୍ନୀ, ଯୁଧିଷ୍ଠିର ଆଦିଙ୍କ ମାତା

୧୨. ଦ୍ରୌପଦୀ - ପଣ୍ଡୁଙ୍କ ପତ୍ରବଧୂ, ଯୁଧିଷ୍ଠିରଆଦିଙ୍କ ପତ୍ନୀ, କୃଷ୍ଣଙ୍କ ସଖୀ

# ଜନନୀ ଜନ୍ମଭୂମିଶ୍ଚ

## ପ୍ରଥମ ଦୃଶ୍ୟ

(ନାଟକ ଆରମ୍ଭ ହୁଏ, କୋରସ ଚରିତ୍ର ମାନଙ୍କଠାରୁ ।
ମଞ୍ଚରେ ଆଲୋକ ଆସିବା ପରେ ଘୋଷଣା ହୁଏ)

କୋରସ (୧) ହେ ସୁଧିବୃନ୍ଦ !

ଆପଣମାନେ ନିଶ୍ଚେ ଉପଲବ୍ଧି କରିଥିବେ, ଯେତେବେଳ ଆପଣମାନଙ୍କ ପରିବାର ଉନ୍ନତିର ପାହାଚ ଚଢିବାକୁ ଆରମ୍ଭକରେ, ସେତେବେଳେ ଆପଣଙ୍କର କିଛି ପ୍ରତିବେଶୀ ତାହାକୁ ଧ୍ୱଂସ କରିବାର ଚେଷ୍ଟା କରି ଭାଇ ଭାଇଙ୍କ ମଧ୍ୟରେ ଅର୍ନ୍ତଦ୍ୱନ୍ଦ ସୃଷ୍ଟି କରନ୍ତି । ଫଳରେ ଆପଣମାନଙ୍କ ମଧ୍ୟରେ କ୍ରମେ ମତାନ୍ତର ମନାନ୍ତର ହୋଇ ହତ୍ୟା ରକ୍ତପାତର ଘଟଣା ଘଟିବାର ମଧ୍ୟ ଦେଖିବାକୁ ମିଳିଥାଏ ।

କୋରସ (୨): ଏଇଭଳି ଧ୍ୱଂସକାରୀ ଶକ୍ତି କେବଳ ପରିବାର ନୁହେଁ ପ୍ରୟୋଜନ ବେଳେ କେତେ ରାଜ୍ୟ, ସାମ୍ରାଜ୍ୟର ଧ୍ୱଂସ କରିବାପାଇଁ ମଧ୍ୟ ପଶ୍ଚାଦପଦ ହୋଇନାହାଁନ୍ତି । ଭାରତର ଭାଗ୍ୟାକାଶରେ, ଏଇଭଳି ଶକ୍ତିମାନେ ପଂଚନଦୀ ଅଞ୍ଚଳରେ ସ୍ୱାତନ୍ତ୍ର୍ୟ ଦାବୀରେ ଭାରତକୁ ଖଣ୍ଡବିଖଣ୍ଡ କରିବାର ପ୍ରୟାସ କରିଛନ୍ତି ।

କୋରସ(୩) : ସେ ପୁଣି ଧର୍ମର ଦ୍ୱାହିଦେଇ । କ୍ରମେ ସେହିପରି ଭାରତର ବିଭିନ୍ନ ଅଞ୍ଚଳର ବିଚ୍ଛିନ୍ନତାବାଦୀ ଶକ୍ତିମାନେ କେଉଁଠି ଧର୍ମ-ଜାତି ଓ ସାମ୍ପ୍ରଦାୟିକତାର ଧ୍ୱନି ଦେଇ ଏହି ମହାଭାରତୀୟ ସଭ୍ୟତାକୁ ଖଣ୍ଡବିଖଣ୍ଡ କରିବାର ପ୍ରୟାସରେ ମଗ୍ନ । ଏଥିପାଇଁ ଦାୟୀ କିଏ ?

କୋରସ କିଏ.... ? କିଏ.... ? କିଏ ... ?

ତେବେ ଆସନ୍ତୁ, ସେହି କିଏର ଜବାବ ଖୋଜିବା ନାଟକ ଜନନୀ ଜନ୍ମଭୂମିଶ୍ଚରୁ........ ।

ଓଁ ସହ ନାବବତୁ,
ସହନୌ ଭୁନକ୍ତୁ, ସହ ବୀର୍ଯ୍ୟଂ କରବାବହୈଃ,
ତେଜସ୍ୱିନାବଧିତମସ୍ତୁ, ମା ବିଦ୍ୱିଷା ବହୈଃ ।

ଓଁ ଶାନ୍ତିଃ .. ଶାନ୍ତିଃ.... ଶାନ୍ତିଃ... ।
(ମଞ୍ଚପୂଜା ସରିବାପରେ, ଜର୍ଜର ଦଣ୍ଡକୁ ମଂଚର ସମ୍ମୁଖ ଭାଗରେ ପୋତି ଦିଆଯିବା ପରେ)

କୋରସ(୧) ହେ ସମଗ୍ର ସଂସାରର ସୁଖପ୍ରଦାନକାରୀ, ହେ ଶୁଭଶକ୍ତି, ଯିଏକି ଆମର ସମାଜକୁ ବିଭିନ୍ନ ସମୟରେ ବିଭିନ୍ନ ରୂପରେ, ଅଶୁଭ ଶକ୍ତିଠାରୁ ରକ୍ଷାକରି ଆସିଛନ୍ତି, ସେ ଆମର ଏହି ନାଟକକୁ ସକଳ ତ୍ରୁଟି ବିଚ୍ୟୁତିରୁ ରକ୍ଷା କରନ୍ତୁ ...... ।

କୋରସ(୨) : ମାଙ୍ଗଳକତ ସରିଲା । ଏଥର ଚାଲ ଆମର ଦର୍ଶକ ବଂଧୁମାନଙ୍କୁ ଆଜିର ନାଟକର ପୂର୍ବାଭାଷ ସଂପର୍କରେ ଟିକିଏ ସୂଚନା ଦେଇଦେବା ।

କୋରସ(୩) : ହଁ ଦିଅନ୍ତୁ... ।

ଦୁର୍ଯ୍ୟୋଧନ (ଦର୍ଶକଙ୍କ ଭିତରୁ ବାହାରି) ଅପେକ୍ଷାକର । (ଦର୍ଶକମାନଙ୍କୁ) ଦେଖିଛକି କେଶବଙ୍କୁ କେହି ? କହିକି ପାରିବ ଅବା ଅଛନ୍ତିକି ଏଠି ?

ଦର୍ଶକ କେଉଁ କେଶବଙ୍କୁ ଖୋଜୁଛନ୍ତି ?

ଦୁର୍ଯ୍ୟୋଧନ ବ୍ୟାସଙ୍କ ରଚିତ, ମହାଭାରତ, ମହାକାବ୍ୟର ବହୁ ଚର୍ଚ୍ଚିତ ପୁରୁଷ ।

ଦର୍ଶକ ସେତ ଅନେକଦିନ ତଳର କଥା । ସେ ହୁଏତ ବୈକୁଣ୍ଠରେ ଥିବେ ।

ଦୁର୍ଯ୍ୟୋଧନ ନା ସେ ନାହାଁନ୍ତି ସେଠାରେ । ଆସିଛନ୍ତି କାଳେ ମହାଭାରତୀୟ ସଭ୍ୟତାର ପରିଦର୍ଶନରେ ।

ଦର୍ଶକ : କିନ୍ତୁ ଆପଣ କିଏ ?

ଦୁର୍ଯ୍ୟୋଧନ : ପାରୁନାହଁ ଚିହ୍ନି ମତେ ?

ଦର୍ଶକ : ନା, ପାରୁନାହୁଁ, ଚିହ୍ନି ।

ଦୁର୍ଯ୍ୟୋଧନ : ପାରିବ କିପରି ? ଯୁଗେ ଯୁଗେ ଯେଉଁମାନେ ଜନ୍ମଭୂମି ଭାରତକୁ ଅଖଣ୍ଡ ରଖିବାର କରିଛନ୍ତି ଆକୁଳ ପ୍ରୟାସ, ତୁମେ ତାଙ୍କୁ କରିଛ ନିହତ ।

ଦର୍ଶକ କିଏ ? ଆମେ..... ?

| | |
|---|---|
| ଦୁର୍ଯ୍ୟୋଧନ | କେବେ ଅବା ମହାତ୍ମାଙ୍କୁ, ଆଉ ଦିନେ ମତେ, ହଁ ଅଭିମାନୀ, ଅହଂକାରୀ ଦୁର୍ଯ୍ୟୋଧନ ଆଖ୍ୟାଦେଇ ଅନ୍ୟାୟ ଭାବରେ କରିଛ ନିହତ । ଭାରତକୁ ଖଣ୍ଡ ଖଣ୍ଡ କରିବାର ଚକ୍ରାନ୍ତରେ ସେ ଯେଉଁ ଅଙ୍କୁର ହୋଇଥିଲା ଦିନେ କୃଷ୍ଣଙ୍କ ନେତୃତ୍ୱରେ ଆଜି ସେହି ବୃକ୍ଷେ ଫଳିଛି ଅସଂଖ୍ୟ ବିଚ୍ଛିନ୍ନତାବାଦୀ ଫଳ । ସେଥିପାଇଁ ଦାୟୀ କିଏ ? |
| ଦର୍ଶକ | ଦାୟୀ କିଏ .... ? ଦାୟୀ କିଏ ......... ? |
| ଦୁର୍ଯ୍ୟୋଧନ | ସେହି ପ୍ରଶ୍ନ ପଚାରି କୃଷ୍ଣଙ୍କୁ କହିଥାନ୍ତି ମୁହିଁ ହସ୍ତିନାକୁ ଖଣ୍ଡ ଖଣ୍ଡ କରିବାର ପ୍ରୟାସରେ ଯୁଦ୍ଧଂଦେହି ଡାକଦେଲେ କିଆଁ ଧର୍ମଯୁଦ୍ଧ ନାମେ, କିବା ପ୍ରୟୋଜନ ଥିଲା ଅବା ବ୍ୟାସଦେବଙ୍କର କୃଷ୍ଣଙ୍କୁ ସେ ଘୋଷଣା କରିଲେ ଭଗବାନ ବୋଲି ? ସେ ଯେଉଁ ପଥ ପ୍ରଦର୍ଶନ ଆରମ୍ଭ ହୋଇଥିଲା ମହାଭାରତର ଯୁଗେ, ଆଜିତାର ପୁନରାବୃତ୍ତି ହେଉଛି ଭାରତେ । |
| କୋରସ | ହଁ.......... ହଁ......... ହୋଇଛି ଭାରତେ । |
| ଦୁର୍ଯ୍ୟୋଧନ | ଉଚିତ କି ନଥିଲା ବ୍ୟାସଙ୍କ ସତ୍ୟାସତ୍ୟ କରି ଉତ୍‌ଥାପନ ରାଜ୍ୟ ବିଭାଜନ ଯୋଜନାର ଖୋଲାଖୋଲି ନିନ୍ଦା କରିବାର ? ତା'ନ କରି ବ୍ୟାସ ଆପଣାର କଳ୍ପନାରେ ବାସୁଦେବେ ଭଗବାନ ଆଖ୍ୟାଦେଇ ସୃଷ୍ଟିକଲେ ଅନ୍ୟ ଏକ କଳ୍ପନାର ଇତିହାସ । (ସୂତ୍ରଧରକୁ) ପାର ଯଦି ସେଇ ସତ୍ୟ କର ଉତ୍‌ଥାପନ । ଜାଣନ୍ତୁ ସମସ୍ତେ, ଜନ୍ମଭୂମି ରକ୍ଷା ପାଇଁ ପ୍ରାଣ ପଣେ ଚେଷ୍ଟାକରି କରିଥିଲି ଅବା କେଉଁ ଅପରାଧ ମୁହିଁ । କରହେ ବର୍ଣ୍ଣନା ଶାନ୍ତି ପ୍ରତିଷ୍ଠାର ବାହାନାରେ କୃଷ୍ଣଙ୍କର ଥିଲା କେଉଁ ହୀନମନ୍ୟ ଅଭିପ୍ରାୟ ଅବା । |

## ୧ମ ଦୃଶ୍ୟ (ପାଣ୍ଡବ ଶିବିର)

| | |
|---|---|
| ଦ୍ରୌପଦୀ | (ପ୍ରବେଶି) ଏତେ ଚିନ୍ତା ଏବେ କାହାପାଇଁ । ଆଜିଯିଏ ଚିନ୍ତିତ ସିଦ୍ଧାନ୍ତ ପାଇଁ, କାଲି ତାଙ୍କ ସେଇ ଚିନ୍ତା ଥିଲା ଅବା କେଉଁ କାରାଗୃହେ ବନ୍ଦୀ । ଯେତେବେଳେ ଆପଣାର ରାଜ୍ୟ ଆଉ ରାଜ୍ୟ ସିଂହାସନ ସାଥେ ପତ୍ନୀ, ଭ୍ରାତାସବୁ ପଣ ରଖୁଥିଲେ ଦ୍ୟୁତକ୍ରୀଡା ବେଳେ । |

| | | |
|---|---|---|
| ଯୁଧିଷ୍ଠିର | | ପାଞ୍ଚାଳି ହୁଅନା କ୍ରୋଧିତ । ରାଜ୍ୟ ଆଉ ରାଜସିଂହାସନ କିବା ଏକମାତ୍ର ପରିଚୟ ମାନବର ? |
| ଦ୍ରୌପଦୀ | | ଚାହେଁନା ମୁଁ ତୁମର ରାଜ୍ୟ ଅବା ରାଜସିଂହାସନ । ଚାହେଁ ମୁହିଁ ବୀରର ବୀରତ୍ୱ । ସେଥିପାଇଁ ସ୍ୱୟଂମ୍ବରେ ପଣ ରଖିଥିଲି ପାଇବାକୁ ପତିରୂପେ ଏ ଧରାରେ ଶ୍ରେଷ୍ଠ ଧନୁର୍ଦ୍ଧର । କିନ୍ତୁ ଦେଖନ୍ତୁ ଦୁର୍ଭାଗ୍ୟ ମୋର, ସେହିପରି ବୀରଶ୍ରେଷ୍ଠ ପଞ୍ଚପତି ସମ୍ମୁଖରେ ନିଃସହାୟ ଭାବେ ଲଜ୍ଜିତ ହୋଇଲି ମୁହିଁ କୁରୁରାଜସଭା ମଧ୍ୟେ ସେଥିଲାଗି କରିଛି ଯା'ପଣ ଆପଣ ଜାଣନ୍ତି ତାହା । ପତିଭାବେ ଆପଣଙ୍କ ଦାୟିତ୍ୱ ମୋହର ପ୍ରତିଜ୍ଞା ପୂରଣ ଲାଗି, ଅଥଚ ଆପଣ....... । |
| ଯୁଧିଷ୍ଠିର | | ଦୁଃଶାସନ ଅନୁଜ ତୁମର |
| ଦ୍ରୌପଦୀ | | ଅନୁଜ, ଅଗ୍ରଜ କିଛି ବୁଝେନା ବିଚାର । ଦୋଷୀପାଇଁ ଉପଯୁକ୍ତ ଦଣ୍ଡ ବିଚାରର ଧର୍ମ । ହେଉସେ ଅଗ୍ରଜ ଅଥବା ଅନୁଜ । |
| ଯୁଧିଷ୍ଠିର | | କ୍ଷମାଦେବା ନାରୀର ମହତ୍ୱ । |
| ଦ୍ରୌପଦୀ | | ଜାଣିଚି ମୁଁ ତାହା । ମାତ୍ର କ୍ଷମାର ଅଯୋଗ୍ୟ ବ୍ୟକ୍ତିଙ୍କୁ କ୍ଷମାଦାନ କରି, କ୍ଷମାର ଅପମାନ କରିବାକୁ ଇଚ୍ଛାନାହିଁ ମୋର । |
| ଯୁଧିଷ୍ଠିର | | ଦୁଃଶାସନେ ହତ୍ୟାକରି କି ଆନନ୍ଦ ପାଇବ ଦ୍ରୌପଦୀ ? |
| ଦ୍ରୌପଦୀ | | ଦୁଷ୍ଟଙ୍କୁ ଦମନ କରି, ଅନ୍ୟାୟକୁ ପ୍ରତିରୋଧ କରିବାର ଆନନ୍ଦ ମିଳିବ ମତେ । |
| ଯୁଧିଷ୍ଠିର | | ସେହି ଅନ୍ୟାୟରେ ମୁଁ ମଧ ଅଛି କିଛି ଦାୟୀ । ସେଥିପାଇଁ ମୋର ମଧ କିଛି ଦଣ୍ଡ ପ୍ରାପ୍ୟ । |
| ଦ୍ରୌପଦୀ | : | ପ୍ରାୟଶ୍ଚିତ କରିବାକୁ ଚାହୁଛନ୍ତି ଯଦି, ଘୋଷଣା କରନ୍ତୁ ଯୁଦ୍ଧ କୌରବଙ୍କ ସାଥେ । ସେହିହେବ ଆପଣଙ୍କର ଉପଯୁକ୍ତ ଦଣ୍ଡ । |
| ଯୁଧିଷ୍ଠିର | | ମୁଁ ଚାହେଁନା ପ୍ରତିହିଂସା, ହତ୍ୟାରକ୍ତପାତ । ମୁଁ ଚାହୁଛି ଶାନ୍ତିପୂର୍ଣ୍ଣ ସମାଧାନ ଆଲୋଚନା ମାଧ୍ୟମରେ । |
| ଦ୍ରୌପଦୀ | | ହୁଁ.... ଆଲୋଚନା । ଏହା ଆପଣଙ୍କର ଉଦାରତା ନୁହଁ ବରଂ ଭୟ । କୌରବଙ୍କ ଶକ୍ତିଭୟେ ଜର୍ଜରିତ ଆଜି ଅଗ୍ରଜ ପାଣ୍ଡବ । ଠିକ୍ ଅଛି ନିରାଶ କରିବେ ଯଦି ପ୍ରଥମ ପାଣ୍ଡବ, ଯିବିମୁହିଁ |

| | |
|---|---|
| | ଅନ୍ୟପାଣ୍ଡବଙ୍କ ପାଶେ, ଭିକ୍ଷାମାଗିବାକୁ ପାଞ୍ଚାଳିର ମାନ । |
| ଯୁଧିଷ୍ଠିର | ବୁଝିବାକୁ ଚେଷ୍ଟାକର ପ୍ରିୟେ ! |
| ଦ୍ରୌପଦୀ | ଆପଣ ନ ଚାହିଁଲେ ନାହିଁ । ଆହୁରି ଅଛନ୍ତି ଚତୁଃଷତି ମୋର । ସେମାନେ କରିବେ ଯୁଦ୍ଧ । |
| ଯୁଧିଷ୍ଠିର | ମୋର ଇଚ୍ଛା ବିରୁଦ୍ଧରେ । |
| ଦ୍ରୌପଦୀ | ସମସ୍ତେ କରିବେ ଯୁଦ୍ଧ, ମୋ ପ୍ରେରଣାରେ । |
| ଯୁଧିଷ୍ଠିର | ଅସମ୍ଭବ ଏହା......... ହେ ଭ୍ରାତାଗଣ, (ଭୀମ, ଅର୍ଜ୍ଜୁନ ଆଦିଙ୍କ ପ୍ରବେଶ) କୁହ ସର୍ବେ ! ଆମେଚାହୁଁ ଶାନ୍ତି (ସମସ୍ତେ ନୀରବ) (ଦ୍ରୌପଦୀ ହସିଲେ) |
| ଦ୍ରୌପଦୀ | କୁହ ସର୍ବେ ... ଆମେ ଚାହୁଁ ପ୍ରତିଶୋଧ । |
| ସମସ୍ତେ | ଆମେ ଚାହୁଁ ପ୍ରତିଶୋଧ । (ଦ୍ରୌପଦୀ ହସିଲେ) |
| ଯୁଧିଷ୍ଠିର | (କାନରେ ହାତ ଦେଇ) ନା.... ନା.... ଅସମ୍ଭବ... ଅସମ୍ଭବ.... |
| ଦ୍ରୌପଦୀ | ସମ୍ଭବ...... |
| ସମସ୍ତେ | ସମ୍ଭବ........ (ଦ୍ରୌପଦୀ ହସିଲେ) |
| | (ଯୁଧିଷ୍ଠିର ବ୍ୟତିରେକ ସମସ୍ତେ ପ୍ରସ୍ଥାନ) |
| ଯୁଧିଷ୍ଠିର | ହେ... କେଶବ.... ରକ୍ଷାକର, ରକ୍ଷାକର... । |
| | (ଶଙ୍ଖଧ୍ୱନି, ଘଣ୍ଟଧ୍ୱନୀ ମଧ୍ୟରେ କୃଷ୍ଣଙ୍କର ପ୍ରବେଶ) |
| କୃଷ୍ଣ | କି ପାଇଁ ସ୍ମରଣ କରିଲେ ଆହେ ଭ୍ରାତା ? |
| ଯୁଧିଷ୍ଠିର | ପାଣ୍ଡବେ ବର୍ଜନ କରି ଧର୍ମର ମହତ୍ତ୍ୱ, ଦ୍ରୌପଦୀର ପ୍ରେରଣାରେ ପ୍ରତିଶୋଧ ନେବାପାଇଁ ହୁଅନ୍ତି ଉନ୍ମତ୍ତ । ତୁମ୍ଭେ ଯାଇ ବୁଝାଅ ତାହାଙ୍କୁ ମୁଁ ଚାହୁଁଛି ଶାନ୍ତି, ଧର୍ମର ଦ୍ୱାହିଦେଇ । |
| କୃଷ୍ଣ | ଧର୍ମ (ହସି) କି ଅବା ଜାଣିଛ ତୁମ୍ଭେ ଧର୍ମାଧର୍ମ ବିଷୟରେ । ଧର୍ମର ନୂତନ ଅଧ୍ୟାୟ ଏକ କହୁଚି ତୁମ୍ଭଙ୍କୁ । ଏ ଧରଣୀ ଆଉ କିଛି ନୁହେଁ, ଅଟେ ଏକ ମୃତ୍ୟୁ ଯଜ୍ଞଶାଳା । ପ୍ରତିଦିନ, ପ୍ରତି ମୁହୁର୍ତ୍ତରେ ଲକ୍ଷ କୋଟି ଜୀବ ଏଠି ପଡୁଛନ୍ତି ଢଳି ମୃତ୍ୟୁକୋଳେ । କାହା ଇଚ୍ଛା ଅନିଚ୍ଛାରେ ଘଟୁଛି ଏସବୁ ? କହିକି ପାରିବ ଏଥିପାଇଁ ଦାୟୀ କିଏ ? ଚାହିଁଲେ ବା ପ୍ରତିରୋଧ କରିକି ପାରିବେ କେହି, ଏଇ ନିତ୍ୟ ସ୍ରୋତକୁ ? |

ଯୁଧିଷ୍ଠିର		ସେତ ଅଟେ ସୃଷ୍ଟିର ରହସ୍ୟ, କେ ଜାଣିଛି ସ୍ରଷ୍ଟାଙ୍କ ଉଦ୍ଦେଶ୍ୟ ?

କୃଷ୍ଣ		ମୃତ୍ୟୁ, ରକ୍ତପାତ ଯଦି ସ୍ରଷ୍ଟାଙ୍କ ଉଦ୍ଦେଶ୍ୟ, ଆପଣ କି ଲାଗି ବୃଥାରେ ଚିନ୍ତିତ ? ଭଗବାନ ନିଜେ ପରା ନାନା ଅବତାରେ ଜନ୍ମି ଏ ଧରାରେ ବାରମ୍ବାର କରିଛନ୍ତି ହତ୍ୟା ରକ୍ତପାତ, ଏ ସୃଷ୍ଟିର ରକ୍ଷା ଲାଗି ।

ଯୁଧିଷ୍ଠିର		ତଥାପି..... ଭାଇ, ବନ୍ଧୁ, କୁଟୁମ୍ବଙ୍କୁ ହତ୍ୟାକରି ହେବିମୁହିଁ ବିଶ୍ୱବିନିନ୍ଦିତ ।

କୃଷ୍ଣ		ପୁଣି ଭୂଲ କରୁଛ ଭ୍ରାତା । କିଏ କାହା ଭାଇ, ବନ୍ଧୁ କିଏ ବା କୁଟୁମ୍ବ । ପିତା-ପୁତ୍ର, ନନ୍ଦନୀ- ଜନନୀ ସବୁ ପ୍ରହେଳିକା ମାତ୍ର । କହିଚି ତୁମ୍ଭଙ୍କୁ ପରା ବାରମ୍ବାର, ଏ ସଂସାର ମିଛମାୟା ରାଜ୍ୟ, କେ ନୁହେଁ କାହାର ।

ଯୁଧିଷ୍ଠିର		ସେଥିଲାଗି କହେ ପ୍ରଭୁ, ଏ ମିଛମାୟା ରାଜ୍ୟେ ଅଧିଶ୍ୱର ହେବାପାଇଁ, ଏତେ ହତ୍ୟା ରକ୍ତପାତଠାରୁ ସନ୍ୟାସ ଜୀବନ ବରଂ ସୁଖପ୍ରଦ ।

କୃଷ୍ଣ		ନୁହେଁ ଏହା କ୍ଷତ୍ରୀୟର ପନ୍ଥା । ବୀରର ବଚନ । ଆପଣାର କର୍ତ୍ତବ୍ୟରୁ ପଛଘୁଞ୍ଚା ଦେଇ ପଳାତକ ଭୀରୁ ଆଚରଣ, ଜ୍ୟେଷ୍ଠ ପଣ୍ଡୁ ପୁତ୍ରେ ଶୋଭାପାଏନାହିଁ ।

ଯୁଧିଷ୍ଠିର	:	ମୁଁ ଯେ ନିରୂପାୟ ।

କୃଷ୍ଣ	:	ତୁମ୍ଭେସିନା ନିରୂପାୟ ହୋଇ, ବାଛିନେବ ସନ୍ୟାସ ଜୀବନ, କିନ୍ତୁ ଅନ୍ୟ ପାଣ୍ଡୁପୁତ୍ର, ମାତାକୁନ୍ତୀ, ପତିବ୍ରତା ପାଞ୍ଚାଳିର ଭବିଷ୍ୟତ ବିଷୟରେ ବିଚାର କରିଛକି ଦିନେ । କି ହେବ ତାଙ୍କର ଗତି ।

ଯୁଧିଷ୍ଠିର	:	ଧର୍ମସଙ୍କଟର ଏହି ଘଡିସନ୍ଧି ମୁହୂର୍ତ୍ତରେ କର୍ତ୍ତବ୍ୟ ଅକର୍ତ୍ତବ୍ୟର ଭେଦାଭେଦ ପାରୁନାହିଁ ଜାଣି । ଶରଣ ତୁମ୍ଭର ପଶୁଛି କେଶବ, କରତୁମ୍ଭେ ମାର୍ଗ ପ୍ରଦର୍ଶନ ।

କୃଷ୍ଣ		ଉଚିତ ସମୟ ପାଇଛ ସାକ୍ଷାତ ମୋହର । ଜ୍ଞାନକର ଯଦି ନାରାୟଣ ବୋଲି ମତେ, କହୁଚି ତୁମ୍ଭଙ୍କୁ- ସ୍ରଷ୍ଟାଙ୍କର ଏହି ବିଶାଳ ସୃଷ୍ଟିରେ ପାଇଛକି କେବେ ଅପ୍ରୟୋଜନୀୟ ଅବା

ଉଦ୍ଦେଶ୍ୟବିହୀନ ବସ୍ତୁ କିଛି । ଠିକ୍ ସେହିପରି ତୁମ୍ଭର ଏ ଜନ୍ମ ମଧ୍ୟେ ଅଛି ଏକ ଗୋପନ ଉଦ୍ଦେଶ୍ୟ । କେବଳ ତୁମ୍ଭର କାହିଁକି, ତୁମ୍ଭର ମୋହର ଆଉ ପାଣ୍ଡବଙ୍କ ଜନ୍ମ ସୂକ୍ଷ୍ମ ଭାବେ ବନ୍ଧାଏକ ଉଦ୍ଦେଶ୍ୟ ସାଧନ ବ୍ରତେ ।

ଯୁଧିଷ୍ଠିର — କି ଉଦ୍ଦେଶ୍ୟ ସଖା ? କୁହ ମତେ ବିସ୍ତାରେ ବୁଝାଇ ।

କୃଷ୍ଣ — ସମଗ୍ର ଧରାରେ ପ୍ରତିଷ୍ଠା ମୁଁ କରିବାକୁ ଯାଉଛି ଏକ ଧର୍ମରାଜ୍ୟ । ଯାହାର ସୀମାନ୍ତ ହେବ ଏ ସାରା ଭୁବନ । ନଥିବ ସେ ରାଜ୍ୟେ ଦୁଃଖ ଓ ଅଶାନ୍ତି । ଥିବ ଖାଲି ଶାନ୍ତି ଆଉ ପ୍ରୀତି ।

ଯୁଧିଷ୍ଠିର — ଏ ତ ମୋର ସ୍ୱପ୍ନର ସାମ୍ରାଜ୍ୟ ।

କୃଷ୍ଣ — ସେ ରାଜ୍ୟର ଅଧିଶ୍ୱର ତୁମ୍ଭେହେବ ଭ୍ରାତା । ଏହା ମୋର ଉକ୍ତି ନୁହଁ, ବିଧିର ନିର୍ଦ୍ଦେଶ । ସେଥିଲାଗି ପାଇଛ କେବଳ ତୁମ୍ଭେ କ୍ଷତ୍ରିୟ ଜନମ ।

ଯୁଧିଷ୍ଠିର — ଅବିଶ୍ୱାସ୍ୟ ମନେହୁଏ ମୋତେ ।

କୃଷ୍ଣ — କିନ୍ତୁ ସେଥିଲାଗି ଶକ୍ତିଶାଳୀ ହେବାକୁ ପଡିବ । ସେଥିପାଇଁ ପ୍ରଥମତଃ ପ୍ରୟୋଜନ ପାଣ୍ଡବଙ୍କ ସମ୍ମିଳିତ ଶକ୍ତି । କିନ୍ତୁ ମନେହୁଏ ଯାହା, ପାଣ୍ଡବ ଉନ୍ମତ୍ତ ଆଜି ନିଜ ନିଜ ଅର୍ନ୍ତଃଦ୍ୱନ୍ଦ ମଧ୍ୟେ । ଏହା କେବେ ଆଶାକରେ ନାହିଁ ମୁହିଁ ପାଣ୍ଡବଙ୍କ ନିକଟରେ ।

ଯୁଧିଷ୍ଠିର — ସେଥିଲାଗି ଦାୟୀକିଏ ବାସୁଦେବ ?

କୃଷ୍ଣ — ଜ୍ୟେଷ୍ଠଭ୍ରାତା ତୁମ୍ଭେ । ଦ୍ୟୁତକ୍ରୀଡା ସିଦ୍ଧାନ୍ତ ଗ୍ରହଣ କରିବା ଆଗେ କନିଷ୍ଠ ଭ୍ରାତାଙ୍କ ମତାମତ ଗହଣ କରିବା କିବା ନଥିଲା ଉଚିତ । ଆଉ ଆଜି ପୁଣି ସେମାନଙ୍କ ମତାମତ କରି ପ୍ରତ୍ୟାଖ୍ୟାନ... । ତହିଁପରେ ଜାଣ ତୁମ୍ଭେ ଦ୍ରୌପଦୀଙ୍କ ପଣ । ଦୁଃଶାସନ ବକ୍ଷରକ୍ତେ କରିବେ ସେ ବେଣୀର ବନ୍ଧନ ।

ଯୁଧିଷ୍ଠିର — କ୍ଷମାସିନା ନାରୀର ନାରୀତ୍ୱ.........

କୃଷ୍ଣ — ସେହିପରି ନାରୀର ସଂହାର ମୂର୍ତ୍ତିପୁଣି ନାଶ କରିପାରେ ମହିଷାସୁରକୁ ଯୁଗେ ଯୁଗେ ନାରୀର କ୍ରୋଧରେ ଧ୍ୱଂସ କେତେ ହୋଇଛ ସାମ୍ରାଜ୍ୟ । ମନେହୁଏ ଏବେ ସେହି ସମୟ ଆସିଛି

ଭ୍ରାତା ଆଉ ଏକ ସାମ୍ରାଜ୍ୟର ଧ୍ୱଂସ ଆଉ ବେଶୀ ଡେରି ନାହିଁ ।

ଯୁଧିଷ୍ଠିର — କେବଳ ଜଣେ ମାତ୍ର ନାରୀ ପାଇଁ ?

କୃଷ୍ଣ — ତୁମ୍ଭେ ଭୁଲ କରୁଛ ଭ୍ରାତା । ନାରୀ ଏକ ସଂଖ୍ୟାନୁହଁ । ନାରୀ ଏକ ଶକ୍ତି । ଶୁଭ କି ଅଶୁଭ, ସୃଷ୍ଟି ଅବା ଧ୍ୱଂସ, ନିର୍ଭର କରୁଛି ତାର ଉପଯୁକ୍ତ ବିନିଯୋଗର ସାଫଲ୍ୟ ଉପରେ । ଦ୍ରୌପଦୀ ଆଜି ଠିକ୍ ସେହିପରି ଏକ ଧ୍ୱଂସକାରିଣୀ ଶକ୍ତି, ତାକୁ ଯଦି ଉପଯୁକ୍ତ ସମୟରେ କୌରବ ଉପରେ ପ୍ରୟୋଗନକର, ତା ହେଲେ ଅବିଳମ୍ବେ ଜାଳିପୋଡି ଧ୍ୱଂସ କରିବସେ ପାଣ୍ଡବଙ୍କୁ ଅର୍ନ୍ତଃଦ୍ୱନ୍ଦ ମଧ୍ୟେ । ଏଥିରେ ସନ୍ଦେହ ନାହିଁ ତିଳେମାତ୍ର ..... ।

ଯୁଧିଷ୍ଠିର — କିନ୍ତୁ........

ଦ୍ରୌପଦୀ — (ପ୍ରବେଶୀ) ଦୀର୍ଘ ୧୩ ବର୍ଷ ଧରି ବିଚାର ବିମର୍ଷ ପରେବି ଆହୁରି ରହିଛି ଅବା ଅବଶେଷ କିଛି । ଅସମୟେ ଆସିଯଦି ଅପରାଧ କରିଥାଏ କ୍ଷମାଦେବ ମତେ ।

କୃଷ୍ଣ — କୁଆଡେ ଯାଉଛ ?

ଦ୍ରୌପଦୀ — ତୁମ୍ଭେ କର ତୁମ୍ଭର ବିଚାର । ମୁଁ ଚାଲିଲି ଆପଣା କର୍ମରେ ।

କୃଷ୍ଣ — ଆଲୋଚନା କରିବନି ଅବା.... ।

ଦ୍ରୌପଦୀ — (ବ୍ୟଙ୍ଗ) ଆଲୋଚନା..... ଏ ନିରର୍ଥକ ଆଲୋଚନା କରି ଲାଭନାହିଁ କିଛି । ଆଜି ପ୍ରୟୋଜନ ମୋର ଯୁଦ୍ଧ, ଖାଲି ଯୁଦ୍ଧ । ଯୁଦ୍ଧ ଆଉ ଦୁଃଶାସନ ବକ୍ଷ ରକ୍ତ । ଆଉ ସେଥିପାଇଁ ଲୋଡା ମୋର ମଧ୍ୟମ ଓ କନିଷ୍ଠ ପାଣ୍ଡବ । ତା ପରେ ଶାନ୍ତି... ତା ପୂର୍ବରୁ ନୁହେଁ ।

କୃଷ୍ଣ — ନିରୁତ୍ସାହିତ କରନ୍ତି ଯଦ୍ୟପି ସମସ୍ତ ପାଣ୍ଡବ କି ଉପାୟ କରିଛବା ସ୍ଥିର, ପାଇବାକୁ ଦୁଃଶାସନ ବକ୍ଷରକ୍ତ ସଖୀ ?

ଦ୍ରୌପଦୀ — ସଖୀବୋଲି ସମ୍ବୋଧନ କରୁଚ ଯେହେତୁ ପାଣ୍ଡବେ ଫେରାଇନେଲେ ଶପଥ ମୋହର, ତୁମେତ ପାରିବ ଆଣି ଦୁଃଶାସନ ବକ୍ଷରକ୍ତ, (ବ୍ୟଙ୍ଗ) ସଖା ।

କୃଷ୍ଣ — ଏତ ଅସମ୍ଭବ ସଖୀ । ଦ୍ୱାରିକାର ଅଧିପତି ମୁହିଁ । ଦ୍ୱାରିକା ସହିତ କରିନାହିଁ ବିରୋଧ ଯେହେତୁ ହସ୍ତିନା କେବେ ହେଁ, କେଉଁ ତର୍କେ କରିବି ମୁଁ ଯୁଦ୍ଧର ଘୋଷଣା ହସ୍ତିନା ସହିତ ।

|  |  |
|---|---|
|  | କୌରବଙ୍କ ଆଜନ୍ମ ବିରୋଧ ପାଣ୍ଡବଙ୍କ ସାଥେ । ପାରିଲେ ପାରିବେ ସେମାନେ ଯୁଦ୍ଧର ଘୋଷଣା କରି । |
| ଦ୍ରୌପଦୀ | ତା ହେଲେ କି ଲାଗି ଆସିଛ ଏଠାକୁ ? |
| କୃଷ୍ଣ | ଆସିଛି ଏଠାକୁ ଅଭୟ ଦେବାକୁ ପାଣ୍ଡବଙ୍କୁ । ଯଦି ତୁମେ ଘୋଷଣା କରିବ ଯୁଦ୍ଧ କୌରବଙ୍କ ସାଥେ, ଅବଶ୍ୟ କରିବି ମୁହିଁ ସମସ୍ତ ସାହାଯ୍ୟ । ଅସ୍ତ୍ରଶସ୍ତ୍ର ସୈନ୍ୟବଳ ଯାହାଲୋଡା ହେବ ପାଣ୍ଡବର । ଏପରିକି ରହିଁବେ ଯଦି ନିଜେ ଆସି ଛିଡାହେବି ପାଣ୍ଡବର ପାର୍ଶ୍ୱେ । |
| ଦ୍ରୌପଦୀ | ତେବେ ଠିକ୍ ଅଛି । ତୁମ୍ଭେ କର ଯୁଦ୍ଧ ଆୟୋଜନ । |
| କୃଷ୍ଣ | ଆଉଥରେ ଭାବି ଦେଖ ସଖୀ । |
| ଦ୍ରୌପଦୀ | ପାଣ୍ଡବେ କରିବେ ଯୁଦ୍ଧ । |
| ଯୁଧିଷ୍ଠିର | ମୋ ଇଚ୍ଛା ବିରୁଦ୍ଧରେ ? |
| ଦ୍ରୌପଦୀ | ଆହୁରି ସନ୍ଦେହର ଅବଶେଷ ଅଛି ? ଅଛି ଯଦି ଥାଉ, ମୁଁ ଚଳଲି ଆପଣା କର୍ମରେ । (ପ୍ରସ୍ଥାନ) |
| ଯୁଧିଷ୍ଠିର | ଦେଖୁଛତ ହେ କେଶବ, ପାଣ୍ଡବଙ୍କ ମନୋଭାବ । କୁହ ମୋତେ, କି କର୍ତ୍ତବ୍ୟ କରିବି ମୁଁ ଏବେ । |
| କୃଷ୍ଣ | ମନେହୁଏ ବିଦ୍ରୋହର ଘନଝଂଜା ଆସୁଛି ଘନେଇ, ପାଣ୍ଡବ ଶିବିରେ । ଇଏ ତାର ପୂର୍ବାଭାଷ । କିଅବା କରିବା ବା ସ୍ଥିର । ଏକ ଦିଗେ କୌରବ ପାଣ୍ଡବ ଯୁଦ୍ଧ । ଅନ୍ୟଦିଗେ ମନେହୁଏ ପାଣ୍ଡବଙ୍କ ଅନ୍ତଃର୍ଦ୍ୱନ୍ଦ୍ୱ ସମୂଳେ ବିନାଶ କରିବ ପାଣ୍ଡବଙ୍କ ବଂଶ । ଦୁଇ କୂଳ ଏବେ କ୍ଷୟଗ୍ରସ୍ତ । |
| ଯୁଧିଷ୍ଠିର | ଅଛିକି ଉପାୟ କିଛି ? |
| କୃଷ୍ଣ | ଦୁଇକୂଳ ରକ୍ଷାପାଇଁ ଅଛି ଅବା ଯେତିକି ଉପାୟ ସେସବୁ କେବଳ କ୍ଷଣସ୍ଥାୟୀ । |
| ଯୁଧିଷ୍ଠିର | ହେଉ କ୍ଷଣସ୍ଥାୟୀ । କିନ୍ତୁ ଏ ସଙ୍କଟ ଟଳିଯାଉ ଆଗେ । |
| କୃଷ୍ଣ | ଠିକ୍ ଅଛି । ପ୍ରଥମ ଉପାୟ ହେଲା- ପାଣ୍ଡବେ ବର୍ଜନ କରି ଆପଣାର ସର୍ବଦାବୀ, ସର୍ବଅଧିକାର ନିଜ ଇଚ୍ଛା ମତେ ସନ୍ନ୍ୟାସୀ ଜୀବନ କରିବେ ଗ୍ରହଣ । |

ଯୁଧିଷ୍ଠିର  ଅସମ୍ଭବ ମନେହୁଏ ତାହା..........

କୃଷ୍ଣ  ନତୁବା ପାଣ୍ଡବେ ହସ୍ତିନାର ଦରବାରେ ପ୍ରାର୍ଥନା କରିବେ ତାଙ୍କ ଭରଣ ପୋଷଣ ଲାଗି କିଛି ଭିକ୍ଷା ।

ଯୁଧିଷ୍ଠିର  ଭିକ୍ଷା । (ଦୀର୍ଘଶ୍ୱାସ ପକାଇ)

କୃଷ୍ଣ  କିଏ ବା କରିବ ଭିକ୍ଷା ? ଆପଣକି ନିଜେଯିବେ ହସ୍ତିନାର ଦରବାରେ ଭିକ୍ଷାପାତ୍ର ନେଇ । ଅସୁନ୍ଦର ହେବ ତାହା ଭ୍ରାତ! । ବରଂ ଯଦି ରହିଁ ଦୁତକୁ ପ୍ରେରଣ କରି ଆଲୋଚନା କର ତୁମ୍ଭେ ହସ୍ତିନା ସହିତ ।

ଯୁଧିଷ୍ଠିର  ମନେହୁଏ ମୋର ଏ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ପାଇଁ ଲୋଡା ଏକ ବିଚକ୍ଷଣ ଦୂତ । ଯିଏ ସଦା ଜ୍ଞାତଥିବ କୌରବ, ପାଣ୍ଡବଙ୍କ ମନୋଭାବ, ପରମ୍ପରା ନେଇ । ତୁମ୍ଭବିନା କିଏ ବା ବହିବ ଏ ଗୁରୁଭାର । ହେ କେଶବ କରୁଚି ପ୍ରାର୍ଥନା, ଦିଅନ୍ତୁ ସମ୍ମତି ଯିବାପାଇଁ ହସ୍ତିନା ନଗରୀ, ପାଣ୍ଡବର ଦୁତଭାବେ ।

କୃଷ୍ଣ  ଠିକ୍ ଅଛି ଚେଷ୍ଟା କରି ଦେଖାଯାଉ ଥରେ...... । (ଯୁଧିଷ୍ଠିର ପ୍ରସ୍ଥାନ) (କୃଷ୍ଣ ପ୍ରସ୍ଥାନୋଦ୍ୟତ)

ଦ୍ରୌପଦୀ  (ପ୍ରବେଶୀ) ଶୁଣ ଆହେ ସଖା । ଦୂତରୂପେ କୁରୁସଭା ମଧ୍ୟେ ଯିବା ପୂର୍ବେ ରହିଁ ଦେଖ ମୋର ଲୁଣ୍ଠିତ କେଶକୁ । ଯାହାଦିନେ ନିର୍ଯ୍ୟାତିତ ହୋଇଥିଲା ସେଇ ସଭାସ୍ଥଳେ, ସେଇସ୍ଥାନେ ଯିବ ତୁମେ ଭିକ୍ଷାପାତ୍ର ନେଇ ପାଣ୍ଡବଙ୍କ ଶାନ୍ତିଦୂତ ହୋଇ ? ପାରିବତ ? ହଁ ନ ପାରିବ କିଆଁ ? ପାଣ୍ଡବର ବନ୍ଧୁ ପୁଣି ଦ୍ରୌପଦୀର ସଖା..........

କୃଷ୍ଣ  କର ନାହିଁ ବ୍ୟଙ୍ଗମତେ ସଖୀ......

ଦ୍ରୌପଦୀ  ସତ୍ୟ କହୁଅଛି ବ୍ୟଙ୍ଗ କରୁନାହିଁ ସଖା, ୧୩ ବର୍ଷ ତଳେ ଦିନେ ଅମର୍ଯ୍ୟଦା ହୋଇଥିଲା ମୋର ଯେଉଁ ସଭାମଧ୍ୟେ, ସେଇସ୍ଥାନେ କାଲିହେବ ତୁମ ଅମର୍ଯ୍ୟଦା ।

କୃଷ୍ଣ  :  ସେଥିପାଇଁ ଅଛି ମୁଁ ପ୍ରସ୍ତୁତ ।

ଦ୍ରୌପଦୀ  :  ତଥାପି ଯଦି ତୁମକୁ ନ ଆସିବ କ୍ରୋଧ, ସେତେବେଳେ ସ୍ମରଣ କରିବ ମୋର ନିର୍ଯ୍ୟାତିତ କେଶ । ତା ପରେ ବି ଯଦି ତୁମ୍ଭେ

ଶାନ୍ତି ସନ୍ଧି କରିବ ସ୍ଥାପନ କୌରବଙ୍କ ସଙ୍ଗେ ତାହେଲେ ତୁମେ ଶୁଣ ପଞ୍ଚାଳିର ପଣ । ନିଜେ ବାହାରିବି ମୁହିଁ ପ୍ରତିଜ୍ଞା ପୂରଣେ । ଅବା ଆତ୍ମ ବିସର୍ଜନେ ।

କୃଷ୍ଣ — ନିରାଶ ହୁଅନା ସଖୀ । କୁହ ତେବେ କି କର୍ତ୍ତବ୍ୟ ମୋର ।

ଦ୍ରୌପଦୀ — କର୍ତ୍ତବ୍ୟ ତୁମର ତୁମେ ଜାଣ ସଖା । ମୁଁ ଚାହୁଁଛି ବଞ୍ଚିବାକୁ ଆପଣାର ସ୍ୱାତନ୍ତ୍ର୍ୟରେ ନାରୀର ମର୍ଯ୍ୟାଦା ନେଇ । ସେ ମର୍ଯ୍ୟାଦା କଳଙ୍କିତ କରିଛି ଯେ, ତାହାର ବିଚାର ତୁମ ହସ୍ତେ ଅର୍ପଣ କରି ମୁଁ ରହିଲି ନିଶ୍ଚିନ୍ତେ । ବାକି କଥା ତୁମେ ଜାଣ ।

କୃଷ୍ଣ — ଅବଶ୍ୟ ହୋଇବ ତାର ଉଚିତ ବିଚାର ।

ଦ୍ରୌପଦୀ — ସେ ବିଚାର ସନ୍ଧିର ନୁହେଁ ଯୁଦ୍ଧର । ଶାନ୍ତିର ନୁହେଁ ପ୍ରତିଶୋଧର ।

କୃଷ୍ଣ — ଯାହା ତବ ଇଚ୍ଛା । ସେଥିପାଇଁ କରିବି ମୁଁ ଆପ୍ରାଣ ପ୍ରଚେଷ୍ଟା । ଦେଲି ଏହି ବଚନ ତୁମ୍ଭକୁ ।
(ଦ୍ରୌପଦୀ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ)
ଏ ସମ୍ବାଦ ରଖିବ ଗୋପନ । ମୁଁ ଫେରିବାଯାଏ ହସ୍ତିନା ନଗରୁ । (କୃଷ୍ଣଙ୍କ ପ୍ରସ୍ଥାନ)

ଦ୍ରୌପଦୀ — କୃଷ୍ଣ ବାସୁଦେବଙ୍କର ଜୟ ହେଉ ।

### ୨ୟ ଦୃଶ୍ୟ (ଶକୁନି କକ୍ଷ)

ଶକୁନି — ଚରଆସି ଗୋପନରେ ଦେଇଛି ସମ୍ବାଦ ଯାହା, ଅବିଶ୍ୱାସ୍ୟ ମନେହୁଏ ମତେ । ଦୀର୍ଘ ୧୩ ବର୍ଷ ଧରି କରିଥିଲି ପ୍ରତୀକ୍ଷାବା ଏଥିଲାଗି ? ମନେ ମନେ ପାଞ୍ଚିଥିଲି ୧୩ ବର୍ଷପରେ ପାଣ୍ଡବେ ଅବଶ୍ୟ ଫେରିବେ ହସ୍ତିନା, କୃଷ୍ଣଙ୍କର ପ୍ରେରଣାରେ ପ୍ରତିଶୋଧ ପାଇଁ । ତାହେଲେବା ହୁଏତ ପୁରିବ ମୋର ମନସ୍କାମ । ତିଳ ତିଳ କରି ଯେଉଁମାନେ ଅନାହାରରେ ନାଶକରିଛନ୍ତି ମୋର ପିତା ଓ ଭ୍ରାତାଙ୍କୁ, ସେହିବଂଶ ଧ୍ୱଂସ ନ କରିବା ଯାକେ ଶାନ୍ତିରେ ମୁଁ ପାରୁନାହିଁ ବଞ୍ଚି । ଅଥଚ କୃଷ୍ଣ ଆସୁଛନ୍ତି ହସ୍ତିନା ସଭାକୁ ପାଣ୍ଡବର ଶାନ୍ତିଦୂତ ହୋଇ । ପାଣ୍ଡବେକି ସତରେ ଭୁଲିଲେ ତାଙ୍କ ଆପଣାର ଅପମାନ, ପତ୍ନୀ ନିର୍ଯ୍ୟାତନା । ହାଃ- ଧିକ୍

ଧିକ୍ ତାଙ୍କ କ୍ଷତ୍ରିୟ ପଣକୁ । ଆଉ କିଭଳି ଭାବରେ ଅପମାନ ଦେଇଥିଲେ ଅବା ରହିଁଥାନ୍ତେ ପ୍ରତିଶୋଧ । ମନେହୁଏ ଏତେଦିନର ପ୍ରତୀକ୍ଷା ମୋହର ହୋଇବ ନିଷ୍ଫଳ । କେଶବଙ୍କ କୁଟନୀତି ବଚନ ଉପରେ ଭରସାରଖି ମୁଁ କରିଛି ବା ଭୁଲ ? ଦେଖାଯାଉ, କୃଷ୍ଣ ରହୁଁଛନ୍ତି ମୋର ଗୋପନେ ସାକ୍ଷାତ, ନିଭୃତ୍‌ରେ ଅର୍ଦ୍ଧରାତ୍ରେ ତାଙ୍କରି ଶିବିରେ । ଜଣାଯିବ ସେତେବେଳେ ଅଛିକିବା ଉଦ୍ଦେଶ୍ୟ ତାଙ୍କ ଶାନ୍ତିଯାତ୍ରା ଛଳେ ।

ଦୁର୍ଯ୍ୟୋଧନ (ପ୍ରବେଶ) ଏଇ ଯେ ମାତୁଳ ! ଅସ୍ଥିର ହୋଇ ମୁଁ ଖୋଜୁଛି ତୁମ୍ଭଙ୍କୁ ।

ଶକୁନି କି କାରଣେ ଅସ୍ଥିରତା ବତ୍ସ ?

ଦୁର୍ଯ୍ୟୋଧନ ଏଇମାତ୍ର ମିଳିଛି ସମ୍ବାଦ, କୃଷ୍ଣ ଆସୁଛନ୍ତି ହସ୍ତିନାର ଦରବାରେ ।

ଶକୁନି ଯୁଦ୍ଧବାର୍ତ୍ତା ନେଇ ?

ଦୁର୍ଯ୍ୟୋଧନ ନା.........

ଶକୁନି ତେବେ ..... ?

ଦୁର୍ଯ୍ୟୋଧନ ଚର ମୁଖୁଁ ପାଇଛି ବାରତା ଯାହା, କୃଷ୍ଣ ଆସୁଛନ୍ତି ପାଣ୍ଡବର ସନ୍ଧିବାର୍ତ୍ତା ନେଇ ।

ଶକୁନି ସନ୍ଧିବାର୍ତ୍ତା ନେଇ ?

ଦୁର୍ଯ୍ୟୋଧନ ଦୟାଆସେ ମତେ । ବିଚରା ପାଣ୍ଡବ.........

ଶକୁନି କିନ୍ତୁ ବତ୍ସ, ମନେମୋର ଆସୁଛି ସନ୍ଦେହ । କୃଷ୍ଣ ଆସୁଛନ୍ତି ଯେତେବେଳେ ଥାଇପାରେ କିଛି ଗୋପନ ରହସ୍ୟ ।

ଦୁର୍ଯ୍ୟୋଧନ : ହୁଏତ ବା ହୋଇପାରେ ..... ।

ଶକୁନି : ନିଶ୍ଚୟ ରହିଛି ପୁତ୍ର, ଜାଣିଛି କୃଷ୍ଣଙ୍କୁ ଯାହା ବିଶ୍ୱାସ ହେଉନି ମନେ, ସନ୍ଧିପାଇଁ ଆସିଥିବେ ସିଏ । ସାବଧାନ ରୁହ ପୁତ୍ର । କୃଷ୍ଣ ଖାଲି ଦୂତ ନୁହେଁ, କୁଟଚକ୍ରୀ । ହେୟ ମନେକରନାହିଁ ତାଙ୍କୁ । ମୋର ମନେହୁଏ ଯାହା କୃଷ୍ଣଙ୍କର ସନ୍ଧିଯାତ୍ରା, କପଟପଶାର ପ୍ରତିଶୋଧ ନେବାପାଇଁ ଏ ଏକ ଛଳନା ଛଡା ଅନ୍ୟ କିଛି ନୁହେଁ ।

ଦୁର୍ଯ୍ୟୋଧନ କୁହନ୍ତୁ ମୋତେ ମାତୁଳ । କେଉଁ ଭାବେ ପ୍ରତିହତ କରାଯିବ ପାଣ୍ଡବଙ୍କ ସନ୍ଧିପତ୍ର ।

| | |
|---|---|
| ଶକୁନି | ଚିନ୍ତା କରିବାକୁ ଦିଅ ପୁତ୍ର । ଭାବି ଦେଖେ କିବା ଥାଇପାରେ ପାଣ୍ଡବଙ୍କ ଦାବି । |
| ଦୁର୍ଯ୍ୟୋଧନ | ସମସ୍ତ ଦାବିତ ହାରିଛନ୍ତି ପଶାଖେଳ ସମୟରେ । ଆଉ କିବା ଦାବି ରହିଛି ତାଙ୍କର । |
| ଶକୁନି | ତା ଅବଶ୍ୟ ସତ୍ୟ । କିନ୍ତୁ ପୁତ୍ର ଜାଣ ତୁମେ ମହାରାଜଙ୍କର ଦୁର୍ବଳତା ପାଣ୍ଡବଙ୍କ ପ୍ରତି । |
| ଦୁର୍ଯ୍ୟୋଧନ | ହଁ ସେଇ ଦୁର୍ବଳତା ଶତ୍ରୁ ଏ ଦେଶର । |
| ଶକୁନି | ସେଥିଲାଗି ଅଧର୍ଯ୍ୟ ହୁଅନା ବତ୍ସ । ରହିଛି ଉପାୟ ଏକ । ଯଦି ତାହା ହୋଇବ ସଫଳ....... । |
| ଦୁର୍ଯ୍ୟୋଧନ | କୁହ ମାତୁଳ । କିବା କାର୍ଯ୍ୟ କରିବାକୁ ହେବ ? |
| ଶକୁନି | ତୁମେ ଯାଇ କୁହ ମହାରାଜେ, କୃଷ୍ଣଙ୍କ ସହିତ ସାକ୍ଷାତ କରିବା ଆଗେ ମହାରାଜ ପ୍ରସ୍ତୁତ କରନ୍ତୁ ଏକ ଶାନ୍ତି ପରିଷଦ । କୃଷ୍ଣଆସି ଆଲୋଚନା କରନ୍ତୁ ପ୍ରଥମେ ଶାନ୍ତି ପରିଷଦ ନିକଟରେ । ଆଲୋଚନା ଶେଷେ ପରିଷଦ ଦେବ ତାଙ୍କ ବିବରଣୀ ମହାରାଜ ପାର୍ଶ୍ୱେ । ତା ପରେ ଉଚିତ ଯଦି ମଣିବେ ନରେଶ, ଆଲୋଚନା କରିବେ ସେ କୃଷ୍ଣ ସାଥେ । |
| ଦୁର୍ଯ୍ୟୋଧନ | କି ଲାଭ ହୋଇବ ଅବା, ପରିଷଦ କରିଲେ ଗଠନ । |
| ଶକୁନି | କୃଷ୍ଣଙ୍କର ଅସଲ ଉଦ୍ଦେଶ୍ୟ ହେବ ଆମ ଅବଗତ । ତା ପରେ ଗୋପନେ କରିବା ସ୍ଥିର ପ୍ରତିକାର ତାର । |
| ଦୁର୍ଯ୍ୟୋଧନ | ଚଲ ତେବେ ଯିବା ଦୁହେଁ, ମହାରାଜା ପାଶେ । |
| ଶକୁନି | ମୋତେ ଯେବେ ତୁମ ସାଥେ ଦେଖିବେ ନରେଶ ସନ୍ଦେହ କରିବେ ନିଶ୍ଚେ । |
| ଦୁର୍ଯ୍ୟୋଧନ | ଠିକ୍ ଅଛି । |
| ଶକୁନି | ଶୁଣ ପୁତ୍ର ! ଶାନ୍ତି ପରିଷଦେ ଅବଶ୍ୟ ରିଖବ ତୁମ୍ଭେ ବିଦୁରଙ୍କୁ ସଦସ୍ୟ ଭାବରେ । |
| ଦୁର୍ଯ୍ୟୋଧନ | ପାଣ୍ଡବେ ଅଟନ୍ତି ତାଙ୍କ ଅତିପ୍ରିୟ । ସେ ରହିଲେ ସଦସ୍ୟ ଭାବରେ, କୌରବଙ୍କ ହିତଠାରୁ ପାଣ୍ଡବଙ୍କ ହିତପାଇଁ ଧ୍ୟାନଦେବେ ବେଶୀ । |

| | | |
|---|---|---|
| ଶକୁନି | | ବିଦୁରଙ୍କୁ ରଖିଲେ ସଦସ୍ୟ, କୃଷ୍ଣଙ୍କର ଆସିବ ବିଶ୍ୱାସ ଶାନ୍ତି ପରିଷଦ ପ୍ରତି । ତା ହେଲେ ସିନା ସନ୍ଦେହ ନରଖି ମନେ ଖୋଲାଖୋଲି ଆଲୋଚନା କରିବେସେ ପରିଷଦ ସାଥେ । |
| ଦୁର୍ଯ୍ୟୋଧନ | : | ତୁମ ମତେ ଆଉ କିଏ ରହିବେ ସଦସ୍ୟ ? |
| ଶକୁନି | : | ଯୁବରାଜ ସ୍ୱୟଂ ନିଶ୍ଚେ ରହିବେ ସେଥିରେ । ସାଥେ ଥିବେ ମହାମନ୍ତ୍ରୀ ଆଉ ତୁମ ଏ ମାତୁଳ । |
| ଦୁର୍ଯ୍ୟୋଧନ | | ଏମାନଙ୍କ ସଙ୍ଗେ ସଖାମୋର ରହିଲେ ମୋ ସାଥେ, ଆପତ୍ତି କି ରହିଛି ତୁମର ? |
| ଶକୁନି | | ଆପତ୍ତି କି ଲାଗି ପୁତ୍ର । ଚେଷ୍ଟାକରି ଦେଖଆଗେ, ମହାରାଜ, ହୋଇବେତ ରାଜି ଶାନ୍ତି ପରିଷଦ ଗଠନର ପାଇଁ । |
| ଦୁର୍ଯ୍ୟୋଧନ | | ସେଥିପାଇଁ ହୁଅନା ଚିନ୍ତିତ । ପାଣ୍ଡବଙ୍କ ପ୍ରତି ଦୁର୍ବଳତା ଥାଏ ଯଦି ଆଉ । ମୋ ଲାଗି ରହିଛି ତାଙ୍କ ଅନାବିଳ ପୁତ୍ର ସ୍ନେହ । ସେହି ସ୍ନେହେ ମୁହିଁ ବାନ୍ଧିବି ତାହାଙ୍କୁ । (ପ୍ରସ୍ଥାନ) |
| ଶକୁନି | | କୃଷ୍ଣ ଯାହା ଆଣନ୍ତୁ ସନ୍ଦେଶ ପଛେ, ପରିସ୍ଥିତି ସଦା ଆପଣା ଆୟତ୍ତେ ନ ରଖିଲେ ଶକୁନିର ହେବ ପରାଜୟ । କୃଷ୍ଣ ଯଦି କରନ୍ତି ବା ପ୍ରତାରଣା ମୋ ସାଥିରେ, ଆପଣାର ଚେଷ୍ଟା ନିଜହସ୍ତେ କରିବି ମୁଁ । |
| | | (ବିଦୁରଙ୍କ ପ୍ରବେଶ) |
| | | ଏଇ ଯେ ମହାମନ୍ତ୍ରୀ, ଶୁଣିଥିବେ ନିଶ୍ଚେ ବାସୁଦେବ ଆସୁଛନ୍ତି ପାଣ୍ଡବଙ୍କ ଶାନ୍ତିଦୂତ ହେଇ ହସ୍ତିନା ସଭାକୁ । |
| ବିଦୂର | | ସେଥିଲାଗି ଯାଉଛି ମୁଁ ମହାରାଜ ପାର୍ଶ୍ୱେ । |
| ଶକୁନି | | ସମ୍ବାଦ ଦେବାକୁ ? |
| ବିଦୂର | | ସମ୍ବାଦତ ସେ ପାଇଥିବେ ଆପଣଙ୍କଠାରୁ । ମୁଁ ଯାଉଛି ଅନ୍ୟକାର୍ଯ୍ୟ ପାଇଁ । |
| ଶକୁନି | | ଜାଣିବାର ଅଛିକି ଆପତ୍ତି ? |
| ବିଦୂର | | ଦ୍ୱାରିକାର ଅଧିପତି ଆସୁଛନ୍ତି ଯେତେବେଳେ ହସ୍ତିନା ସଭାକୁ, ହସ୍ତିନାର ମହାରାଜ ତରଫରୁ ସ୍ୱାଗତର ଆୟୋଜନ କରିବାକୁ ହେବ । |

| | |
|---|---|
| ଶକୁନି | ମହାରାଜ ଯଦି କରନ୍ତି ଆପତ୍ତି ? |
| ବିଦୁର | ଅତିଥିଙ୍କୁ ସ୍ୱାଗତ କରିବା ପ୍ରଚଳିତ ପ୍ରଥା, ରାଜ ପରମ୍ପରା । |
| ଦୁର୍ଯ୍ୟୋଧନ | (ପ୍ରବେଶି) ଅତିଥି ନୁହଁନ୍ତି, ଦୂତ ସିଏ । |
| ବିଦୁର | ଦୂତକୁ ସ୍ୱାଗତ କରିବା ମଧ୍ୟ ରାଜ ପରମ୍ପରା । |
| ଦୁର୍ଯ୍ୟୋଧନ | ପୁରାତନ ପରମ୍ପରା ଭଙ୍ଗ ହେଲେ କ୍ଷତି କିବା ହେବ କିଛି ହସ୍ତିନାର ? |
| ଶକୁନି | ଉତ୍ତେଜିତ ହୁଅନାହିଁ ପୁତ୍ର । ମନ୍ତ୍ରୀଙ୍କର ରାଜକାର୍ଯ୍ୟ କରିବାକୁ ଦିଅ ତାଙ୍କୁ । |
| | (ଚୁପଚୁପ ଦୁର୍ଯ୍ୟୋଧନକୁ) ଶୁଣ ଆହେ ପୁତ୍ର ମୋର ଯୁକ୍ତି, ଆଡମ୍ବରେ ସ୍ୱାଗତ କରି ବାସୁଦେବେ, ଯଥାଇଚ୍ଛା ଉପହାର ଦେଇତାଙ୍କୁ ହୁଏତବା ପାଣ୍ଡବଙ୍କ ଉଦ୍ଦେଶ୍ୟକୁ ବିଫଳ କରାଯାଇପାରେ । |
| | (ଦୁର୍ଯ୍ୟୋଧନ ସମ୍ମତି) |
| | ଆପଣ ଯାଆନ୍ତୁ ମହାମନ୍ତ୍ରୀ । ମହରାଜାଙ୍କର ଅନୁମତି ନେଇ କରନ୍ତୁ ସ୍ୱାଗତ ବାସୁଦେବ କୃଷ୍ଣେ । |
| | (ବିଦୁର ପ୍ରସ୍ଥାନ) |
| | କୁହ ବତ୍ସ, କିବା ହେଲା ଆଲୋଚନା ମହାରାଜସାଥେ । ଶାନ୍ତି ପରିଷଦ ଅବା ହେଲାକି ଗଠିତ ? |
| ଦୁର୍ଯ୍ୟୋଧନ | ମହାରାଜ ଦେଇଛନ୍ତି ସମ୍ମତି ପଠାଇ । ଶାନ୍ତି ପରିଷଦ ହୋଇଛି ଗଠିତ ଆପଣଙ୍କ ପରାମର୍ଶ ମତେ । |
| ଶକୁନି | ଚମତ୍କାର ପୁତ୍ର । ଚାଲ ଏବେ ମହାରଜେ କହି କୃଷ୍ଣଙ୍କର ଆତିଥ୍ୟର ବନ୍ଦୋବସ୍ତ କରିବାକୁ ହେବ । |
| ଦୁର୍ଯ୍ୟୋଧନ | ଯାଅ ତୁମେ ଏକା, କୃଷ୍ଣଙ୍କ ସ୍ୱାଗତ ଲାଗି ନୁହେଁ ମୁଁ ସମ୍ମତ । |
| ଶକୁନି | ଏ ଆମର ଆନ୍ତରିକ ସ୍ୱାଗତିକା ନୁହଁ ପୁତ୍ର, ଛଳନା ମାତର । ଯଦି କୃଷ୍ଣ ଧରା ଦିଅନ୍ତି ଏଥିରେ ତାହେଲେ ତାଙ୍କୁ କରି କରାୟତ, ପାଣ୍ଡବଙ୍କ ଉଦ୍ଦେଶ୍ୟକୁ କରାଯିବ ପଣ୍ଡ । |
| ଦୁର୍ଯ୍ୟୋଧନ | ଆଉ ଯଦି ସିଏ ନ ଦିଅନ୍ତି ଧରା............. ? |
| ଶକୁନି | ତାହାହେଲେ ଉଦ୍ଦେଶ୍ୟ ତାଙ୍କର ପଣ୍ଡହେବ ନିଶ୍ଚେ । ପାଣ୍ଡବ, |

କୌରବଙ୍କର ଏ ସମସ୍ୟା ଅତ୍ୟନ୍ତ ଜଟିଳ । କୃଷ୍ଣଙ୍କର ଆୟତ୍ତ ବାହାରେ ।

ଦୁର୍ଯ୍ୟୋଧନ ଆମେ ଋହୁଁ ସମାଧାନ କୌରବ ପକ୍ଷରେ ।

ଶକୁନି (ସ୍ୱଗତୋକ୍ତି) ଦେଖାଯାଉ- କୃଷ୍ଣଙ୍କର ଅଛିକିବା ଯୁକ୍ତି, ପାଣ୍ଡବଙ୍କ ଅଧିକାର ସପକ୍ଷରେ (ପ୍ରକାଶ୍ୟେ) ନିଶ୍ଚିନ୍ତରେ ରୁହ ପୁତ୍ର, କୌରବଙ୍କ ଅଧିକାର ଘେନି । ବିଫଳ କରିବି ନିଶ୍ଚେ କୃଷ୍ଣଙ୍କର ଉଦ୍ଦେଶ୍ୟ, ମୁଁ ବଞ୍ଚିଥିବା ଯାଏଁ ।

ଦୁର୍ଯ୍ୟୋଧନ ତା ହେଲେ ମୁଁ ଆସୁଛି ମାତୁଳ ।

ଶକୁନି ଆସ ପୁତ୍ର ମୁଁ ଦେଖୁଛି ଯାଇ, ମହାରାଜ କଲେଣିକି ସ୍ୱାଗତର ଆୟୋଜନ କିଛି । (ଦୁହେଁ ପ୍ରସ୍ଥାନ)

**୩ୟ ଦୃଶ୍ୟ (ରାଜପଥରେ କୃଷ୍ଣଙ୍କୁ ସ୍ୱାଗତ)**

କୋରସ ଗୀତ : ସ୍ୱାଗତମ୍........ ମଧୁ
ସ୍ୱାଗତମ୍..................

(ଗୀତ ଶେଷରେ ଶକୁନି- ବିଦୁର- କୃଷ୍ଣ)

ଶକୁନି ଯାଦବପତି, ଦ୍ୱାରିକାଧିଶ୍ୱର, କୃଷ୍ଣବାସୁଦେବଙ୍କୁ ହସ୍ତିନାର ଅଧିପତି ମହାରାଜ ଧୃତରାଷ୍ଟ୍ରଙ୍କ ତରଫରୁ ସ୍ୱାଗତ ଜଣାଇ ହସ୍ତିନାର ଆତିଥ୍ୟ ଗ୍ରହଣ କରିବା ଲାଗି ନିମନ୍ତ୍ରଣ କରୁଛି ।

କୃଷ୍ଣ ଦ୍ୱାରିକାର ଅଧିପତି ଭାବେ ଆସିଥାନ୍ତି ଯଦି ହସ୍ତିନା ନଗରୀ, ଗ୍ରହଣ ମୁଁ କରିଥାନ୍ତି ଆନନ୍ଦରେ ରାଜକୀୟ ଆତିଥ୍ୟ ତୁମର । କିନ୍ତୁ ହେ ମାତୁଳ, ମନସ୍କାମ ମୋର ନହେଲେ ପୂରଣ, କିପରି ବା ଗ୍ରହଣ କରିବି ମୁହିଁ ଆତିଥ୍ୟ ତୁମର । କ୍ଷମାକର ମତେ ।

ଶକୁନି ମହାରାଜ ହୋଇବେ ଦୁଃଖିତ ।

କୃଷ୍ଣ ମହାରାଜେ କହିବେ ବୁଝାଇ । ପାଣ୍ଡବର ଦୂତଭାବେ ପ୍ରାର୍ଥନା ମୋହର ଯଦି କରିବେ ପୂରଣ, ଗ୍ରହଣ କରିବି, ମନଭରି ରାଜକୀୟ ଆତିଥ୍ୟ ତାଙ୍କର । ତା ପୂର୍ବରୁ ଶୋଭନୀୟ ହେବନାହିଁ ତାହା ।

ବିଦୁର : ଅବସ୍ଥାନ କରିବେ କେଉଁଠି ତେବେ ହେ କେଶବ ?

କୃଷ୍ଣ : ମାତା କୁନ୍ତୀଙ୍କର ସାଥେ, ସାକ୍ଷାତ ହେବାର ଆଗେ ଅଛି ପ୍ରୟୋଜନ । ତା ପରେ ଯାଇ ବିଶ୍ରାମର ଚିନ୍ତା ।

| | |
|---|---|
| ବିଦୁର | ସାଥେମୋର କରନ୍ତୁ ଗମନ, ରଥେ ମୋର ବସି । (ପ୍ରସ୍ଥାନ ଓ ଅଙ୍ଗକାର) |

## ୪ର୍ଥ ଦୃଶ୍ୟ (ବିଦୁରଙ୍କ ଗୃହ)

| | |
|---|---|
| କୁନ୍ତି | ହେ କେଶବ ! ପୁତ୍ରେ ମୋର ଅଛନ୍ତି କିପରି ? |
| କୃଷ୍ଣ | ମାତା ! ପୁତ୍ରେ ତବ ଦ୍ରୌପଦୀଙ୍କ ସହ ଅଛନ୍ତି କୁଶଳେ, ତାଙ୍କରି ବାରତା ନେଇ ଆସିଛି ମୁଁ ତୁମ୍ଭ ନିକଟକୁ । |
| କୁନ୍ତି | ଶୀଘ୍ରକୁହ ! କି ବାରତା ଆଣିଛ କେଶବ । ଶୁଭ କି ଅଶୁଭ କୁହ, ହୃଦମୋର ହେଉଛି ବ୍ୟାକୁଳ । |
| କୃଷ୍ଣ | ଶାନ୍ତହୁଅ ମାତା । ଆସିଛି ମୁଁ ହସ୍ତୀନାପୁରକୁ ପାଣ୍ଡବର ଶାନ୍ତିଦୂତ ହେଇ । ମାଗିବାକୁ ଭିକ୍ଷାଭାବେ ୫ ଖଣ୍ଡି ଗ୍ରାମ ପାଣ୍ଡବଙ୍କ ଲାଗି । |
| କୁନ୍ତି | ମାତ୍ର ୫ ଖଣ୍ଡି ଗ୍ରାମ ! ମହାରାଜ ପଣ୍ଡୁପୁତ୍ରଙ୍କର ? ହେ କେଶବ, ପୁତ୍ରେ ମୋର ଅଛନ୍ତିକି ଅବଗତ । ଭବିଷ୍ୟତ ଲାଗି । |
| କୃଷ୍ଣ | ଜାଣିଛି ମୁଁ ପାଣ୍ଡବଙ୍କ ନ୍ୟାର୍ଯ୍ୟ ଅଧିକାର । ଅବଶ୍ୟ ମାଗିବି ତାହା ହସ୍ତିନାସଭାରେ । ଏ କଥାବି ଜାଣିଛନ୍ତି ସର୍ବେ, କୌରବ କେବେହେଁ ତାହା ଦେବାପାଇଁ ହେବେନାହିଁ ରାଜି । ନ୍ୟାର୍ଯ୍ୟ ଅଧିକାର ପାଇଁ ପାଣ୍ଡବଙ୍କୁ ପ୍ରସ୍ତୁତ ହେବାକୁ ହେବ ଯୁଦ୍ଧକ୍ଷେତ୍ର. ପାଇଁ । |
| କୁନ୍ତି | ତା' ହେଲେ ତୁମେ କିମ୍ପା ଆସିଛ କେଶବ ଭିକ୍ଷା ପାତ୍ର ନେଇ ହସ୍ତିନାପୁରକୁ ? ପାଣ୍ଡବେକି ଅସମର୍ଥ ପିତାଙ୍କର ନ୍ୟାର୍ଯ୍ୟ ଅଧିକାର ଫେରିପାଇବାକୁ ? |
| କୃଷ୍ଣ | ପାଣ୍ଡବେ କଦାପି ଅସମର୍ଥ ନୁହେଁ ମାତ । ଯୁଦ୍ଧପାଇଁ ସରିନି ପ୍ରସ୍ତୁତି ସବୁ । |
| କୁନ୍ତି | ୧୩ ବର୍ଷ ଅବସର ପରେ ମଧ୍ୟ ସରିନି ପ୍ରସ୍ତୁତି ? |
| କୃଷ୍ଣ | ଅଧୈର୍ଯ୍ୟ ହୁଅନା ମାତା ! ଶୁଣ ମୋର ଉକ୍ତି । କୌରବ ପାଣ୍ଡବ ଯୁଦ୍ଧହେଲେ ପାଣ୍ଡବଙ୍କ ପ୍ରତିପକ୍ଷେ ରହିବେ ବିଶ୍ୱର ତିନୋଟି ଅଜେୟ ଶକ୍ତି । ପ୍ରଥମରେ ମୃତ୍ୟୁଞ୍ଜୟି ପିତାମହ ଭୀଷ୍ମ, ଦ୍ୱିତୀୟରେ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ, ତଥା ତୃତୀୟରେ ଅଙ୍ଗରାଜ କର୍ଣ୍ଣ । ସେଥିପାଇଁ ୧୩ ବର୍ଷ ପୂର୍ବେ କହିଥିଲି ଆପଣଙ୍କୁ, |

ହସ୍ତିନାରେ ରହଣି କାଳରେ ମାତା, ଛଳେ ଅବା କୌଶଳେ ପିତାମହଙ୍କର ମନେ ଜାଗ୍ରତ କରିବ ତୁମେ ଜୀବନ ବିତୃଷ୍ଣା ମଧ୍ୟେ ମୃତ୍ୟୁର ବାସନା । ଆଉ ଯଦି ହୁଅଇ ସମ୍ଭବ, ଏକାନ୍ତରେ ଅଙ୍ଗରାଜେ ଆପଣାର ପରିଚୟ ଦେଇ କହିବ ତାହାଙ୍କୁ ତାଙ୍କ ଜନ୍ମ ଇତିହାସ । ଇତିମଧ୍ୟେ ଅବଶ୍ୟ ମୁଁ ପାଇଛି ଦ୍ରୋଣଙ୍କର ଦୁର୍ବଳତା । ସେଇହେବ ଶେଷଅସ୍ତ୍ର ତାଙ୍କ ମୃତ୍ୟୁପାଇଁ । କୁହ ମାତା କେତେଦୂର ଅଗ୍ରସର ହୋଇଅଛନ୍ତି ଆପଣାର କାର୍ଯ୍ୟେ ।

କୁନ୍ତି — ପାରିନି ମୁଁ ମୃତ୍ୟୁଭେଦ ଜାଣି ପିତାମହଙ୍କର । ଅବଶ୍ୟ ଜାଗିଛି ଜୀବନ ବିତୃଷ୍ଣା ପିତାମହଙ୍କର । ପିତାମହ କହିଛନ୍ତି ଏକାନ୍ତରେ ମତେ, ଯଦି ହୁଏ କୌରବ ପାଣ୍ଡବଙ୍କ ଯୁଦ୍ଧ ସେଇହେବ ତାଙ୍କ ଜୀବନର ଅନ୍ତିମ ଅଧ୍ୟାୟ ପଣ କରିଛନ୍ତି ପୁଣି ନାରୀ କିମ୍ବା ଅର୍ଦ୍ଧନାରୀ ବିରୁଦ୍ଧରେ ଅସ୍ତ୍ର ଧରି କରିବେନି ଯୁଦ୍ଧ ।

କୃଷ୍ଣ — ନାରୀ କିମ୍ବା ଅର୍ଦ୍ଧନାରୀ । ସଯତ୍ନେ ରହିଲା ମୋର ମନରେ ଏ କଥା । ଦେଖାଯିବ, ଯଦି କେବେ ହୁଏ ପ୍ରୟୋଜନ କିନ୍ତୁ ମାତା ଅଙ୍ଗରାଜ କର୍ଣ୍ଣ ? ଦେଲଣିକି ପରିଚୟ ତାଙ୍କୁ ?

କୁନ୍ତି — କ୍ଷମାକର ବାସୁଦେବ । ନିରୁପାୟ ମୁହିଁ କର୍ଣ୍ଣ ସଂପର୍କରେ । ଦୀର୍ଘ ୧୩ ବର୍ଷ ଧରି ଯେତେଥର ରହିଁଛି ମୁଁ ପରିଚୟ ଦେବାକୁ କର୍ଣ୍ଣରେ । ସେତେଥର ଅଶ୍ରୁସିକ୍ତ ହୋଇଛି ନୟନ ସିନା, ଅନ୍ତରର କୋହରୂପି ପରିଚୟ ଦେଇ ପାରିନାହିଁ ତାହାର ସମ୍ମୁଖେ । ନା ନା ନିରୁପାୟ ମୁହିଁ ବାସୁଦେବ । ଏ ଅତି କଠିନ କାର୍ଯ୍ୟ । ପରିତ୍ୟକ୍ତ ପୁତ୍ର ସମ୍ମୁଖରେ ଉଭାହୋଇ ପୁତ୍ରବୋଲି ସମ୍ବୋଧନ କରିବାକୁ କେମିତି କେଜାଣି ମୋତେଲାଗେ ଅସହାୟ ।

କୃଷ୍ଣ — ଅବଶ୍ୟ କଠିନ ମାତା । ଠିକ ଅଛି, ସେ ଦାୟିତ୍ୱ ନେଲି ମୁହିଁ । କିନ୍ତୁ ମାତା, ଅନ୍ୟ ଏକ କାର୍ଯ୍ୟ ଅଛି ଆପଣଙ୍କ ଲାଗି ।

କୁନ୍ତି — ଶୁଣେ ଆଗେ କିବା ସେହି କାର୍ଯ୍ୟ ।

କୃଷ୍ଣ — ଅତ୍ୟନ୍ତ ପ୍ରୟୋଜନ ତାହା ପାଣ୍ଡବଙ୍କ ପ୍ରାଣରକ୍ଷା ଲାଗି । କେବଳ

ସେତିକି ନୁହେଁ, ଏହି କାର୍ଯ୍ୟ ସମ୍ଭବ ହୋଇବ ଏକା ଆପଣଙ୍କ ଦ୍ୱାରା ।

କୁନ୍ତି — କୁହ ତେବେ ବିଳମ୍ବ ନ କରି ।

କୃଷ୍ଣ — କାଲି ପ୍ରଭାତରେ, ସୂର୍ଯ୍ୟଙ୍କୁ ତର୍ପଣସାରି ଫେରିବାର ପଥେ, ଏକାନ୍ତେ ନିବୃତ୍ତେ । ଉଭାହୋଇ କର୍ଣ୍ଣଙ୍କ ସମ୍ମୁଖେ ମାଗିବେ ତାହାଙ୍କୁ ପଞ୍ଚପୁତ୍ର ପ୍ରାଣ, ଯଦିହୁଏ ସମ୍ମୁଖ ସମର ।

କୁନ୍ତି — କିନ୍ତୁ................

କୃଷ୍ଣ — ଆପଣଙ୍କ ପରିଚୟ ମୁଁ ଦେଇଥିବି ଯଥେଷ୍ଟ ପୂର୍ବରୁ । ତା ଛଡା ଜାଣନ୍ତି ଆପଣ ପ୍ରତିଦିନ ସେହି ମୂହୁର୍ତ୍ତରେ ଅଦେୟ ରହେନା କିଛି କର୍ଣ୍ଣ ନିକଟରେ ।

କୁନ୍ତି — ମାତା ହୋଇ ପରୋକ୍ଷରେ କର୍ଣ୍ଣ ଭଳି ପୁତ୍ରର ମୃତ୍ୟୁକୁ ଅବା ଋହିଁବି କିପରି ?

କୃଷ୍ଣ — ଭାବିଦେଖ ମାତା- ଏକ ପାର୍ଶ୍ୱେ କର୍ଣ୍ଣ, ଅନ୍ୟପାର୍ଶ୍ୱେ ପଞ୍ଚପୁତ୍ର ତବ । ତା ଛଡା କର୍ଣ୍ଣଙ୍କର ମୃତ୍ୟୁ ତୁମେ ଋହୁନାହଁ ମାତା ବରଂ ତୁମେ କର୍ଣ୍ଣଠାରୁ ଋହୁଁଅଛ ପାଣ୍ଡବଙ୍କ ଜୀବନ ପ୍ରାର୍ଥନା ।

କୁନ୍ତି — କିନ୍ତୁ ମନ ମୋର ବୁଝୁନାହିଁ, ହେବନିକି ଏହା କର୍ଣ୍ଣ ପ୍ରତି ଅବିଋର ମୋର ?

କୃଷ୍ଣ — କରିଛି ମୁଁ ସକଳ ପ୍ରଚେଷ୍ଟା, କର୍ଣ୍ଣଙ୍କୁ ଆଣିବା ଲାଗି ପାଣ୍ଡବେ ଶିବିରରେ । କିଏ କହିପାରେ ହୁଏତ ଶେଷରେ, ଜ୍ୟେଷ୍ଠପୁତ୍ର ତବ ହୋଇଯିବେ ରାଜି ମାତାଙ୍କ ସ୍ନେହରେ ।

କୁନ୍ତି — କେଜାଣି କି ଇଛା ଅଦୃଷ୍ଟର ।

ବିଦୁର — ଆସନ୍ତୁ ହେ ପ୍ରଭୁ । ଭୋଜନର ହେଲାଣି ସମୟ । (ଅନ୍ଧକାର)

### ୫ମ ଦୃଶ୍ୟ

(ରାତ୍ରିର ଏକାନ୍ତରେ କୃଷ୍ଣ ଶିବିରରେ ଶକୁନି ପ୍ରବେଶ)

କୃଷ୍ଣ — କୁଶଳତ ସବୁ ହସ୍ତିନାର ?

ଶକୁନି — କିନ୍ତୁ ଏ କି ପ୍ରହସନ ତୁମ୍ଭ ପାରୁନାହିଁ ବୁଝି । ଯୋଜନାନୁସାରେ କଥାଥିଲା ବନବାସ ପରେ ପାଣ୍ଡବେ କରିବେ ଯୁଦ୍ଧ ହସ୍ତିନା ସହିତ, ଅଥଚ ଆପଣ ଆସିଲେ ଶେଷେ ସନ୍ଧିବାର୍ତ୍ତା ଧରି । ଏଇଥି ପାଇଁ କି ମୁହିଁ ଚୁକ୍ତି କରିଥିଲି ଆପଣଙ୍କ ସାଥେ ।

କୃଷ୍ଣ ଉତ୍ତେଜିତ ହଅନା ମାତୁଳ । ଚୁକ୍ତି ଅନୁସାରେ ସବୁ ଠିକ୍ ଅଛି । ମନେକର ଏହି ଆଗମନ ତାର ପ୍ରଥମ ସୋପାନ । କୁହ ଖୋଲି ହସ୍ତିନାର ସମାଚର ସବୁ ।

ଶକୁନି ଯୋଜନାନୁସାରେ ହସ୍ତିନାର ସମସ୍ତ ସମସ୍ୟା ଏହି ଅଧମର ଅଛି କରାୟତେ । ଚହିଁବା ମାତ୍ରକେ କୁରୁକ୍ଷେତ୍ରେ ବାଜିବ ଦୁନ୍ଦୁଭିଃ । ସେ ଲାଗି କରନା ଚିନ୍ତା । ଆହେ ବାସୁଦେବ । ସମସ୍ତ ନିର୍ଦ୍ଦେଶ ତୁମ ଚଳିଅଛି ଗୋପନେ କୌଶଳେ ହସ୍ତିନାପୁରରେ । ଇତିମଧ୍ୟେ ହସ୍ତିନାର ରାଜସଭା, ରାଜକାର୍ଯ୍ୟ, ପ୍ରତିରକ୍ଷା, ଗୋପନ ରହସ୍ୟ ସବୁ କରିଛି ଆୟତ୍ତ । ଉଚିତ ସମୟେ ମୁହିଁ ଯୋଗାଇବି ସମସ୍ତ ଗୋପନ ତଥ୍ୟ ।

କୃଷ୍ଣ ତୁମ କାର୍ଯ୍ୟ କଳାପରେ, ଜନ୍ମିଛିକି କୌଣସି ସନ୍ଦେହ କୌରବ ହୃଦୟେ ?

ଶକୁନି ନା ବାସୁଦେବ, କୌରବ ଜାଣନ୍ତି ମୋତେ ହିତକାଂକ୍ଷୀ ତାଙ୍କ ।

କୃଷ୍ଣ ବାଃ ଚମତ୍କାର ତୁମ ଅଭିନୟ । ଠିକ୍ ଅଛି । କିନ୍ତୁ ଫେରିଯିବା ପୂର୍ବେ ଦାୟିତ୍ୱ ରହିଚି ଏକ ତୁମ ଲାଗି । ସାବଧାନେ କରିବ ପୂରଣ ।

ଶକୁନି ଅଛି କି ସନ୍ଦେହ କିଛି ?

କୃଷ୍ଣ ଏକ କି କଥା କହୁଛ ମାତୁଳ । ତୁମକୁ ସନ୍ଦେହ ? ଅସମ୍ଭବ ।

ଶକୁନି କୁହନ୍ତୁ କି କାର୍ଯ୍ୟ ।

କୃଷ୍ଣ ଯେବେ ଯିବି ମୁହିଁ କୌରବର ଦରବାରେ, ପାଣ୍ଡବର ଶାନ୍ତିବାର୍ତ୍ତା ନେଇ, ନାନା ଭାବେ ଉତ୍ତେଜିତ କରି ଦୁର୍ଯ୍ୟୋଧନେ, ପାଣ୍ଡବଙ୍କ ଶାନ୍ତି ସନ୍ଧି କର ପ୍ରତ୍ୟାଖ୍ୟାନ ।

ଶକୁନି : କିନ୍ତୁ ପାଣ୍ଡବଙ୍କ ସନ୍ଧିବାର୍ତ୍ତା ସମ୍ବନ୍ଧରେ ମିଳିବକି ପୂର୍ବାଭାଷ କିଛି ?

କୃଷ୍ଣ : ପାଣ୍ଡବଙ୍କ ନ୍ୟାର୍ଯ୍ୟ ଅଧିକାର - ଅର୍ଦ୍ଧ ରାଜ୍ୟ ।

ଶକୁନି : ଅର୍ଦ୍ଧ ରାଜ୍ୟ ! ବାସ୍ !! ଏଥିପାଇଁ ଦୁର୍ଯ୍ୟୋଧନେ ଉତ୍ତେଜିତ କରିବାକୁ ଲୋଡା ନାହିଁ ମୋର ପ୍ରୟୋଜନ । ଜାଣନ୍ତି ସମସ୍ତେ ଦୁର୍ଯ୍ୟୋଧନ ଦୁର୍ବଳତା କଥା । ମାତୃଭୂମି ଭକ୍ତ ସିଏ । ଅନାୟାସେ ଦେଇପାରେ ଜୀବନସେ ମାତୃଭୂମି ପାଇଁ ସିନା, ମାତୃଭୂମି ଅସମ୍ମାନ ଅବା ବିଭାଜନ ସହିବନି କେବେ ।

| | |
|---|---|
| କୃଷ୍ଣ | ତାର ସେଇ ଦୁର୍ବଳତା ହେବ ଆମ୍ଭ ଅସ୍ତ୍ର । ଆଉ ଏକ ଦାୟିତ୍ୱ ତୁମକୁ ଦେଉଅଛି ମୁହିଁ । ଅତ୍ୟନ୍ତ ଚତୁର ଭାବେ ସମାପନ କରିବାକୁ ହେବ ତାହା........ ଅନ୍ୟଥା ଯୋଜନା ସବୁ ହୋଇପାରେ ପଣ୍ଡ । |
| ଶକୁନି | ନିର୍ଦ୍ଦେଶ ଦିଅନ୍ତୁ ମତେ । |
| କୃଷ୍ଣ | ହସ୍ତିନାର ଦରବାରେ ପାଣ୍ଡବର ସନ୍ଧି ଯେବେ ହେବ ପ୍ରତ୍ୟାଖ୍ୟାନ, ସେତେବେଳେ ନାନାଭାବେ ଉତ୍ତେଜିତ କରିବି ମୁଁ......... । ଅତି ସାବଧାନେ ଦୁର୍ଯ୍ୟୋଧନେ ଦିଅହେ ମନ୍ତ୍ରଣା କରିବାକୁ ବନ୍ଦୀ ମତେ । |
| ଶକୁନି | ଏହି କିଆ ? ଆପଣ ହୋଇଲେ ବନ୍ଦୀ କୌରବର କାରାଗାରେ, ଯୋଜନା ଆମର ସବୁ ହେବ ଅର୍ଥହୀନ । କିପରି ମୁଁ ପୂରଣ କରିବି ଉଦ୍ଦେଶ୍ୟ ମୋହର । |
| କୃଷ୍ଣ | (ହସି) ଏଇ ବୁଦ୍ଧି ନେଇ କୂଟନୀତି ଖେଳ ଖେଳୁଛ ମାତୁଳ ? ଶୁଣ ତେବେ କହୁଛି ମୁଁ । କୌଶଳେ ସେଦିନ ସଭାଗୃହେ ଦ୍ୱାରପାଳ ରଖିବ ଯେତକ ଆପଣାର ସୈନ୍ୟ ବନ୍ଦୀ କରିବାକୁ ମୋତେ, ଆଦେଶ ପାଇଲାମାତ୍ରେ ସୈନ୍ୟମାନେ ନିଜ ନିଜ ମଧ୍ୟେ ଖଣ୍ଡଯୁଦ୍ଧ କରିବେ ରଚନା, ସେଇ ସୁଯୋଗରେ ଖସିଯିବି ମୁହିଁ । |
| ଶକୁନି | ଚମତ୍କାର, ଚମତ୍କାର ଯୋଜନା । |
| କୃଷ୍ଣ | ଏବେ ଫେରିଯାଇ, ହସ୍ତିନାର ରାଜପୁରେ, କରିବ ଏ ଗୁଜବ ପ୍ରଚାର କୃଷ୍ଣ ଅଟେ ଅତ୍ୟନ୍ତ ମାୟାବୀ........... ଚାହିଁଲେ ସେ କରିପାରେ ଅବିଳମ୍ବେ ମାୟାର ରଚନା । (ଶକୁନିର ପ୍ରସ୍ଥାନ) |
| କୃଷ୍ଣ | ମହାମନ୍ତ୍ରୀ, ମହାମନ୍ତ୍ରୀ । |
| ବିଦୁର | କି କାରଣେ କରିଲେ ସ୍ମରଣ ମତେ ନିଶାର୍ଦ୍ଧରେ ପ୍ରଭୁ । |
| କୃଷ୍ଣ | ରହିଛି ଗୋପନ କଥା, ଜାଣନ୍ତି ଆପଣ କାଲିଯିବି ହସ୍ତିନା ସଭାକୁ । କିନ୍ତୁ......... |
| ବିଦୁର | ଘଟିଛିକି ଅଘଟଣ କିଛି ? |
| କୃଷ୍ଣ | ଅଘଟଣ ଘଟିବାର ଅଛି ସମ୍ଭାବନା । |

| | |
|---|---|
| ବିଦୁର | କିବା ଅଘଟଣ ପ୍ରଭୁ । |
| କୃଷ୍ଣ | ଚର ମୁଖୁ ପାଇଛି ମୁଁ ଗୋପନ ସଂବାଦ, କାଲି ଯେବେ ଯିବି ମୁହିଁ ହସ୍ତିନା ସଭାକୁ, ସଭାଗୃହ ମଧେ ଦୁର୍ଯ୍ୟୋଧନ ଆଦେଶରେ ବନ୍ଦୀ କରାଯିବ ମୋତେ । |
| ବିଦୁର | ଅସମ୍ଭବ ଏହା, ଦୂତକୁ ବନ୍ଦୀ କରିବା ନୁହେଁ ରାଜଧର୍ମ । |
| କୃଷ୍ଣ | ହସ୍ତିନାର ରାଜସଭା ମଧ୍ୟେ ଧର୍ମାଧର୍ମ କିଛି ନାହିଁ ଏବେ । ଏଣୁ ଅନୁରୋଧ ଆପଣଙ୍କ ଅନୁଗତ କିଛି ଯୋଦ୍ଧା ଛଦ୍ମବେଶେ ଅସ୍ତ୍ରଶସ୍ତ୍ରେ ହୋଇ ସୁସଜ୍ଜିତ ରହିଥିବେ ସଭାଗୃହ ମଧ୍ୟେ । ପ୍ରୟୋଜନ ହେଲେ ପ୍ରତିରୋଧ କରିବେ ସେମାନେ । |
| ବିଦୁର | ନିଶ୍ଚିତ ରୁହନ୍ତୁ ପ୍ରଭୁ । ପ୍ରତିକାର କରିବି ଅବଶ୍ୟ । |
| କୃଷ୍ଣ | ନିଶ୍ଚିତ ହେଲି ମୁଁ ଏବେ । ଏଥର ଯାଆନ୍ତୁ...... କରିବେ ବିଶ୍ରାମ । |

(ବିଦୁର ପ୍ରସ୍ଥାନ)

କୃଷ୍ଣ ଶୋଇଲେ

ସକାଳର ସୂଚନା

## ୬ଷ୍ଠ ଦୃଶ୍ୟ

(କର୍ଣ୍ଣ ଗାଧୋଉଛନ୍ତି । ଗାଧୋଇସାରି ସୂର୍ଯ୍ୟଙ୍କୁ ପାଣି ଟେକୁଥିବେ.............)

କର୍ଣ୍ଣ ମନ୍ତ୍ର ପଢୁଛନ୍ତି :

ଜବା କୁସୁମ ସଂକାଶଂ
କାଶ୍ୟପେୟଂ ମହାଦ୍ୟୁତି
ଧ୍ୱାନ୍ତାରିଃ ସର୍ବ ପାପଘ୍ନଂ
ପ୍ରଣତସ୍ମି ଦିବାକରଂ ।

(ଅଦୂରରେ କୃଷ୍ଣ ଏବଂ କୁନ୍ତି ପ୍ରବେଶୀ)

| | |
|---|---|
| କୃଷ୍ଣ : | ଏଇଦେଖ ମାତା, ଜ୍ୟେଷ୍ଠ ପୁତ୍ର ତବ ଆପଣାର ଅଜାଣତେ ପୂଜଇ ଆପଣା ପିତା ସୂର୍ଯ୍ୟଦେବତାଙ୍କୁ ଇଷ୍ଟ ଦେବ ମନେକରି । |
| କୁନ୍ତି | ଧନ୍ୟ ପୁତ୍ର, ଧନ୍ୟ ତୁମ ପିତୃଭକ୍ତି । |
| କୃଷ୍ଣ | ଶୁଣ ମାତା, ଅପେକ୍ଷା କରନ୍ତୁ ଏଠି । ଯାଉଛି ମୁଁ କର୍ଣ୍ଣ ପାଶେ । ପରିଚୟ କହିବି ତାହାଙ୍କୁ । କିନ୍ତୁ ମାତା, ମନସ୍ଥିରକରି ପ୍ରାର୍ଥନା |

କରିବେ ଯାହା କହିଥିଲି ମୁହିଁ ।

କୁନ୍ତି — କେଉଁ ମୁଖେ ଭିକ୍ଷା ମୁହିଁ କରିବି ଲଜ୍ଜାହୀନ ଭାବେ ।

କୃଷ୍ଣ — ହେ ଜନନୀ, ଆପଣ ଚାହାନ୍ତି ଅବା ପଞ୍ଚପୁତ୍ର ମୃତ୍ୟୁ ।

କୁନ୍ତି — ଏକି କଥା କହୁଛ କେଶବ ? ମାତା କିବା ଚାହେଁ କେବେ ପୁତ୍ରର ମରଣ ।

କୃଷ୍ଣ — ତର୍କ ବିତର୍କର ସମୟ ଏ ନୁହଁ ମାତା । ପାଣ୍ଡବର ହିତ ଲାଗି ଆପଣା ଉଦ୍ୟମେ ଯାହାକିଛି କରିଛି ମୁଁ ଆଜି ଯାକେ, କରିବାକୁ ଚାହାନ୍ତିକି ପଣ୍ଡ । କୁହନ୍ତୁ ସେ କଥା । ଫେରିଯିବି ମୁହିଁ ଦ୍ୱାରିକାକୁ ହତଭାଗ୍ୟ ପାଣ୍ଡବଙ୍କ ଭବିଷ୍ୟତ ଆପଣଙ୍କ ହସ୍ତେ ଦେଇ ।

କୁନ୍ତି — ଅଭିମାନ କର ନାହିଁ ପୁତ୍ର । ବୁଝିବାକୁ ଚେଷ୍ଟାକର ମାତାର ବେଦନା ।

କୃଷ୍ଣ — ଏକ ପାର୍ଶ୍ୱେ ପଞ୍ଚପୁତ୍ର, ଅନ୍ୟପାର୍ଶ୍ୱେ ଏକମାତ୍ର ପୁତ୍ର । କୁହନ୍ତୁ ଚଞ୍ଚଳ, ହେଉଛି ଉଚ୍ଛୁର ।

କୁନ୍ତି — ଠିକ୍ ଅଛି । ଯଥା ତବ ଇଚ୍ଛା ।

କୃଷ୍ଣ — ମନେଅଛି । ମାଗିବାକୁ କହିଥିଲି ଯାହା, ଅବା ପୁଣି କହିବି ବୁଝାଇ ।

କୁନ୍ତି — ସବୁ ମନେଅଛି ପୁତ୍ର - କିନ୍ତୁ - ପାରିବିତ ?

କୃଷ୍ଣ — ମନ ଦୃଢ କଲେ ନିଶ୍ଚୟ ପାରିବ ମାତା, ଏଇ ଦେଖ ଆସୁଛନ୍ତି କର୍ଣ୍ଣ । (କର୍ଣ୍ଣଙ୍କୁ) ପ୍ରଣାମ ହେ ଜ୍ୟେଷ୍ଠ କୁନ୍ତୀପୁତ୍ର ।

କର୍ଣ୍ଣ — ଜ୍ୟେଷ୍ଠକୁନ୍ତୀ ପୁତ୍ର ! ମତିଭ୍ରମ ହେଲାଣିକି ବାସୁଦେବ ? ଜାଣନାକି ରାଧାଙ୍କର ପୁତ୍ରବୋଲି, ରାଧେୟ ନାମରେ ଖ୍ୟାତ ମୁହିଁ ସମଗ୍ର ଭୁବନେ ।

କୃଷ୍ଣ — ଅଙ୍ଗରାଜ ! ଜାଣେ ମୁଁ ଏକଥା । ପିତା ଅଧିରଥ ଆଉ ମାତା ରାଧାଙ୍କର ପାଳିତ ସନ୍ତାନ ତୁମେ । କିନ୍ତୁ କିଏ ତୁମ ଜନ୍ମଦାତା ଜାଣିଛକି ତୁମେ ।

କର୍ଣ୍ଣ — ଜାଣିବାର ନାହିଁ ପ୍ରୟୋଜନ । ଯେଉଁ ପିତାମାତା ଆପଣା ପୁତ୍ରକୁ ବିସର୍ଜନ କରିଛନ୍ତି ଭାଗିରଥି ଜଳେ, ତାଙ୍କଲାଗି ମରିଛି ମୁଁ ଚିରଦିନ ପାଇଁ । କିବା ଲାଭ ଅତୀତର ସେଇ ପରିଚୟ ଜାଣି ।

ବରଂ ସୁଖୀ ମୁହିଁ ରାଧେୟ ନାମରେ ।

କୃଷ୍ଣ — ସୁଖୀ ବା ଅସୁଖୀ ହୁଅ ଅଙ୍ଗରାଜ । ଏ କଥା ନିରାଟ ସତ୍ୟ ତୁମେ ଅଟ ଜ୍ୟେଷ୍ଠ କୁନ୍ତୀପୁତ୍ର ।

କର୍ଣ୍ଣ — ପ୍ରମାଣ କି ଅଛି କିଛି ତାର ।

କୃଷ୍ଣ — ସାକ୍ଷୀ ତୁମ ପିତା ସୂର୍ଯ୍ୟଦେବ ।

କର୍ଣ୍ଣ — ସୂର୍ଯ୍ୟ ଦେବ ପିତା ମୋର.......... ?

କୃଷ୍ଣ — ହଁ ଅଙ୍ଗରାଜ, ସୂର୍ଯ୍ୟଙ୍କ ଔରସରୁ, ମାତା କୁନ୍ତିଙ୍କ ଗର୍ଭରୁ ଜନ୍ମବୋଲି ଜ୍ୟେଷ୍ଠ କୁନ୍ତିପୁତ୍ର ତୁମେ । ସେଇ ମାତା କୁନ୍ତିଙ୍କ ଆଜ୍ଞାରେ ଆସିଛି ମୁଁ ନିମନ୍ତ୍ରଣ କରିବାକୁ ଆପଣଙ୍କୁ ପାଣ୍ଡବେ ଶିବିରେ ।

କର୍ଣ୍ଣ — ପାଣ୍ଡବ ଶିବିରେ ନିମନ୍ତ୍ରଣ ମୋର ? କରୁଛକି ବ୍ୟଙ୍ଗ ମତେ କୃଷ୍ଣ ?

କୃଷ୍ଣ — ମାତା କୁନ୍ତୀଙ୍କର ଇଚ୍ଛା, ଜ୍ୟେଷ୍ଠ କୁନ୍ତି ପୁତ୍ର ଯେଣୁ ତୁମ୍ଭେ ଜ୍ୟେଷ୍ଠ ପାଣ୍ଡବର ସବୁ ଅଧିକାର, ପ୍ରଥମେ ପାଇବ ତୁମ୍ଭେ ।

କର୍ଣ୍ଣ — (ବ୍ୟଙ୍ଗରେ) ସବୁ ଅଧିକାର ?

କୃଷ୍ଣ — ଯଶ, ମାନ, ରାଜ୍ୟ............ ଏପରିକି ପାଞ୍ଚାଳୀ ପାଇବ ତୁମ୍ଭେ ପାଣ୍ଡବର ସମଅଧିକାରେ ।

କର୍ଣ୍ଣ — ମାତା କୁନ୍ତି ଚହାଁନ୍ତି ଏକଥା ?

କୃଷ୍ଣ — ଜ୍ୟେଷ୍ଠ ଭ୍ରାତା ଜ୍ଞାନ କରି ତୁମ୍ଭ ଶିରେ ରାଜଛତ୍ର ଧରିଥିବେ ଯୁଧିଷ୍ଠିର ନିଜେ ।

କର୍ଣ୍ଣ — ଉତ୍କୋଚର ପ୍ରଲୋଭନ ଦେଖାଉଛ ମୋତେ...........

କୃଷ୍ଣ — ଯଦି ତୁମ୍ଭେ କୌରବଙ୍କୁ ତ୍ୟାଗକରି ପାଣ୍ଡବେ ଶିବିରେ ଫେରିଯିବ ।

କର୍ଣ୍ଣ — ପାଣ୍ଡବେ କି ଚାହାଁନ୍ତି ସେ କଥା ? ବିଶ୍ୱାସ ହୁଏନା ମୋର ।

କୃଷ୍ଣ — ପାଣ୍ଡବଙ୍କ ତରଫରୁ ମାତା କୁନ୍ତି ଆସିଛନ୍ତି ତୁମ୍ଭ ନିକଟକୁ ।

କର୍ଣ୍ଣ — ଅସମ୍ଭବ ଏହା ବାସୁଦେବ । ପାଣ୍ଡବ ଶିବିରେ ଫେରିବାର ସବୁ ପଥ ରୁଦ୍ଧ ଆଜି । ହସ୍ତିନାର ରାଜଛତ୍ର ଦୂରେ ଥାଉ, ସାରା ପୃଥିବୀର ରାଜଛତ୍ର ଯଦି ମୋ ମସ୍ତକେ ଧରି ଯୁଧିଷ୍ଠିର ଛିଡା

ହୁଏ ଆସି ତା ହେଲେ ସମ୍ଭବ ନୁହେଁ ଫେରିଯିବା ପାଣ୍ଡବ ଶିବିରେ ।

କୃଷ୍ଣ ପାଣ୍ଡବେ କି ଏକାନ୍ତ ଅଯୋଗ୍ୟ ତୁମ ଭ୍ରାତା ହେବାପାଇଁ ?

କର୍ଣ୍ଣ ପାଣ୍ଡବଙ୍କ କିଛି ନାହିଁ ଦୋଷ । ଜାଣ ତୁମ୍ଭେ ମୋତେ- ମୃତ୍ୟୁ ପଛେ କରିବି ସ୍ୱାଗତ ବନ୍ଧୁମିତ୍ର ପାଇଁ, କିନ୍ତୁ ଆପଣାର ସ୍ୱାର୍ଥଲାଗି ମିତ୍ରକୁ ମୋହର ତ୍ୟାଗକରି ସଙ୍କଟର ମୁଖେ, ଆତ୍ମଘାତି ହେବିନାହିଁ କେବେ ।

କୃଷ୍ଣ ଯୁଧିଷ୍ଠିର ଯଦି ନିଜେ ଆସେ ତୁମ ପାର୍ଶ୍ୱେ ।

କର୍ଣ୍ଣ (ଚମକି) ଯୁଧିଷ୍ଠିର ଜାଣନ୍ତି ଏ କଥା ?

କୃଷ୍ଣ ମାତା କୁନ୍ତି ଆଉ ମୋ ବ୍ୟତୀତ ତୁମେ ଏକା ଜାଣିଲ ଏ ଗୋପନ ରହସ୍ୟ ।

କର୍ଣ୍ଣ ତାହାହେଲେ ଶପଥ କର ତୁମ୍ଭେ, ଏ ଗୋପନ ରହସ୍ୟର ଉନ୍ମୋଚନ କରିବନି କେବେ । ମୁଁ ଚାହେଁନା କଳଙ୍କିତ ଏଇ ଜୀବନ ରହସ୍ୟ ଅନ୍ୟ କେହି ଜାଣୁ ।

କୃଷ୍ଣ ମାତା କୁନ୍ତି ଆସିଛନ୍ତି ତୁମ୍ଭ ନିକଟକୁ କରିବାକୁ ଅନୁରୋଧ ଏକ । ତୁମ୍ଭେ ତାଙ୍କୁ କହିବ ବୁଝାଇ, (କୁନ୍ତିଙ୍କ) ଏଇ ତବ ଜ୍ୟେଷ୍ଠ ପୁତ୍ର ମାତା, ବହୁ ଚେଷ୍ଟାକରି ହୋଇଛି ନିଷ୍ଫଳ, ପାର ଯଦି ନିଜେ ଆସି ଅନୁରୋଧ କର । (କୁନ୍ତି ପାଖେଇ ଆସିଲେ, କୃଷ୍ଣ ଦୂରେଇ ଗଲେ କର୍ଣ୍ଣ ଆସି ନମସ୍କାର କଲେ ।)

କୁନ୍ତି କ୍ଷମାକର ପୁତ୍ର । ଘୃଣା ଆଉ କରନାହିଁ ମତେ । ବାଲ୍ୟ ଚପଳତା ବଶେ ମହର୍ଷିଙ୍କ ମନ୍ତର ପରୀକ୍ଷା କରି ସୂର୍ଯ୍ୟଦେବେ କରିଲି ପ୍ରାର୍ଥନା ଯେବେ ଥିଲି ମୁଁ- କୁମାରୀ । ଲୋକନିନ୍ଦା ଅପବାଦ ଭୟେ ନିରୁପାୟ ହୋଇ ମୁହିଁ ବିସର୍ଜନ କଲି ଶେଷେ ଆପଣା ପୁତ୍ରକୁ ଭାଗିରଥି ଜଳେ । ସେଇଦିନୁ ପ୍ରତିମୁହୂର୍ତ୍ତରେ ଅନୁଶୋଚନାର ଦହନରେ ଜଳୁଛି ମୁଁ ଦିବାନିଶୀ । ଏତେ ଦିନ ପରେ ସୁଯୋଗ ଆସିଛି ଆଜି । କ୍ଷମା କରି ଫେରିଚାଲ ପୁତ୍ର ଆପଣା ଗୃହକୁ ।

କର୍ଣ୍ଣ କରନାହିଁ, ଅଧିକ ଲଜ୍ଜିତ ମତେ । ବୁଝିଛି ମୁଁ ଆପଣଙ୍କ ବ୍ୟଥା ।

କିନ୍ତୁ ମାତା, କେଉଁ ଅଭିପ୍ରାୟେ ଏତେଦିନ ପରେ ପରିଚୟ କରିଲେ ଘୋଷଣା ?

କୁନ୍ତି — ବହୁବାର ଚେଷ୍ଟା କରିଛି ମୁଁ ପୁତ୍ର । କିନ୍ତୁ ପ୍ରତିଥର ଜର୍ଜରିତ ହୋଇଛି ମୁଁ ଆପଣାର କୃତକର୍ମ ଲାଗି । ଏତେଦିନପରେ ଆସିଛି ଯେହେତୁ ନିରାଶ କରନା ପୁତ୍ର ।

କର୍ଣ୍ଣ — କିନ୍ତୁ ମାତା, ନିରୁପାୟ ମୁହିଁ । ପାଣ୍ଡବ ଶିବିରେ ମୋର ଫେରିବାର ସବୁପଥ ରୁଦ୍ଧ ଆଜି ଚିରଦିନ ପାଇଁ ।

କୁନ୍ତି — ମୁଁ ବଞ୍ଚିଥାଉଁ ଥାଉଁ ପାଣ୍ଡବ ଶିବିରେ ଅବଜ୍ଞା କରିବ କିଏ ? କାହାରବା ଅଛି ଏ ସାହସ ?

କର୍ଣ୍ଣ — କିନ୍ତୁ...........

କୁନ୍ତି — ତେବେ ବା ଆପତ୍ତି କିଆଁ ପୁତ୍ର ?

କର୍ଣ୍ଣ — ତୁମେ କୁହ ମାତା, ଏନ୍ତୁଡି ଶାଳରୁ ଆଜିଯାକେ ପାଳିପୋଷି ମଣିଷ କରିଛି ଯିଏ ମତେ, ସେମାନେ କି ନୁହଁନ୍ତି ମୋହର ମାତାପିତା ? ତାଙ୍କର ଏ ବାର୍ଦ୍ଧକ୍ୟ କାଳରେ କେଉଁ ମୁଖେ ପରିତ୍ୟାଗ କରିତାଙ୍କୁ ଫେରିଯିବି ଆପଣଙ୍କ ସାଥେ ?

କୁନ୍ତି — ନିରାଶ ହେବିକି ପୁତ୍ର ?

କର୍ଣ୍ଣ — ଅନ୍ୟ କିଛି କରହେ ଆଦେଶ !

କୃଷ୍ଣ — ଉଚିତ କହିଅଛନ୍ତି ଅଙ୍ଗରାଜ ମାତା । ଅନୁଭବ କର ତାଙ୍କ ଅସହାୟ ପରିସ୍ଥିତି । ଋହଁଯଦି ଅନ୍ୟକିଛି ମାଗିନିଅ ପ୍ରତିବଦଳରେ... (ଠାରିବା)

କୁନ୍ତି — ଚାହଁ ଯଦି ଭିକ୍ଷାଦିଅ ମତେ ପାଣ୍ଡୁ ପଞ୍ଚପୁତ୍ରର ଜୀବନ ।

କର୍ଣ୍ଣ — (ହସି) ମୁଁ ଜାଣିଛି ଏହା ତୁମ ଅନ୍ତରର କଥା ନୁହେଁ, ତଥାପି ଭିକ୍ଷା ତୁମେ ଚାହୁଁଛ ଯେହେତୁ ନିରାଶ ହେବନି କେବେ କର୍ଣ୍ଣ ନିକଟରୁ । ଶୁଣ ମାତା........ ଯଦି ହୁଏ କୌରବ ପାଣ୍ଡବ ଯୁଦ୍ଧ ରଣାଙ୍ଗନେ କ୍ଷମାଦେବି ଅର୍ଜୁନର ବ୍ୟତିରେକ ସମସ୍ତ ପାଣ୍ଡବେ ।

କୁନ୍ତି — କିନ୍ତୁ ପୁତ୍ର, ଭିକ୍ଷା ମୋର ତୁମ ପାଶେ ପଣ୍ଡୁ ପଞ୍ଚପୁତ୍ରର ଜୀବନ ।

କର୍ଣ୍ଣ — ଯୁଦ୍ଧ ଶେଷେ କର୍ଣ୍ଣ ବା ଅର୍ଜୁନ ଯିଏ ବଞ୍ଚିଥିଲେ ପଞ୍ଚପୁତ୍ର ତବ ରହିବ ଅତୁଟ ।

କୁନ୍ତି	ଦେଖିବାକୁ ହେବ ଶେଷେ ମତେ, ଭାଇ ଭାଇ ଯୁଦ୍ଧ ।

କର୍ଣ୍ଣ	ଅଥବା ଚାହିଁବେ ଯଦି ଦେବି ମୋ ଜୀବନ ତୁମ୍ଭ ପାଦେ କରି ସମର୍ପଣ ।

କୁନ୍ତି	ଲଜ୍ଜା ଆଉ ଦିଅନାହିଁ ପୁତ୍ର । କରନା ଧିକ୍‌କାର ।

କର୍ଣ୍ଣ	ଦିଅନ୍ତୁ ମେଲାଣି ତେବେ ।

କୁନ୍ତି	ପୁଣି କେବେ ଦେଖାହେବ ପୁତ୍ର ?

କର୍ଣ୍ଣ	ବଞ୍ଚିରହେ ଯଦି ଯୁଦ୍ଧପରେ ହୋଇବ ସାକ୍ଷାତ । ନତୁବା ଏ ଜନ୍ମପାଇଁ ଏଇ ଶେଷ ଦେଖା ।

(ନମସ୍କାର କରି, କୁନ୍ତି କାନ୍ଦି କାନ୍ଦି ଯିବା ସମୟରେ)

ଶୁଣ ମାତା, ଅନୁରୋଧ ମୋର ଏକ ତୁମ୍ଭ ପାଶେ । ଜୀବନ ରହସ୍ୟ ମୋର ଚିରଦିନ ରଖିବ ଗୋପନ । ବିଶେଷତଃ ପାଣ୍ଡବଙ୍କଠାରେ ।

କୁନ୍ତି	ତଥାସ୍ତୁ (ପ୍ରସ୍ଥାନ)

କୃଷ୍ଣ	ପାଣ୍ଡବଙ୍କୁ ଆପଣାର ଅନୁଜ ଜାଣିଲା ପରେ ଯୁଦ୍ଧ ସମୟରେ ସେମାନଙ୍କ ସାଥେ ଯୁଦ୍ଧ କରିବାକୁ ବାଣ ତୁମ୍ଭ ଥରିଉଠେ ଯଦି ।

କର୍ଣ୍ଣ	ଅଧିକ ସମ୍ଭବ ତାହା । ତାହା ହେଲେ ଅଧିକ ଆନନ୍ଦିତ ହେବ ତୁମେ । ଜାଣିଛି ତୁମର ଅସଲ ଉଦ୍ଦେଶ୍ୟ । ସରଳଧର୍ମ ବିଶ୍ୱାସୀ ପାଣ୍ଡବମାନଙ୍କୁ ଧର୍ମନାମେ କରି କରାୟତ୍ତ ଆପଣାର ସ୍ୱାର୍ଥଲାଗି ଧ୍ୱଂସକାର୍ଯ୍ୟେ କରିଛ ନିଯୁକ୍ତ । ତୁମ ସ୍ୱାର୍ଥ ବିରୁଦ୍ଧରେ ସ୍ୱରଉତ୍ତୋଳନ କରନ୍ତି ଯିଏ, ଜରାସନ୍ଧ ଅବା ଶିଶୁପାଳ, ସମସ୍ତଙ୍କୁ ଅନ୍ୟାୟରେ କରିଛ ନିଧନ । ଏବେ ତୁମ ଦୃଷ୍ଟି ହସ୍ତିନା ଉପରେ । ଧର୍ମ ରକ୍ଷାନାମେ ପାଣ୍ଡବଙ୍କୁ ସେଥିଲାଗି କରୁଅଛ ଉତ୍ସାହିତ, କୌରବଙ୍କ ବିରୁଦ୍ଧରେ ଅସ୍ତ୍ର ଧରିବାକୁ । ସେଇ ସୁଯୋଗରେ ଛଳେ ବଳେ ଅଥବା କୌଶଳେ କୌରବଙ୍କୁ ଧ୍ୱଂସକରି କରିବାକୁ ଚାହଁ ହସ୍ତିନାକୁ ଖଣ୍ଡ ବିଖଣ୍ଡିତ । ତା ହେଲେ ଯାଇ ସସାଗରା ଧରଣୀରେ ପୂଜିତ ହୋଇବ ତୁମ୍ଭେ ଧର୍ମଗୁରୁ ଭାବେ ଯୁଗ ସ୍ରଷ୍ଟା ହୋଇ । ସମସ୍ତେ ମାନିବେ ତୁମ୍ଭଙ୍କୁ ପ୍ରଭୁ ବୋଲି । ଏ ସାରା ସୃଷ୍ଟିରେ ତୁମ୍ଭ ଇଚ୍ଛା ବିରୁଦ୍ଧରେ, ପ୍ରତିବାଦ

| | |
|---|---|
| | କରିବାକୁ ରହିବେନି କେହି । ବାଃ ଚମତ୍କାର ଯୋଜନା ତୁମର । |
| କୃଷ୍ଣ | ଏ ତୁମର ମିଥ୍ୟା ଅଭିଯୋଗ । |
| କର୍ଣ୍ଣ | (ହସି) ଧରାପଡିଗଲ ବୋଲି କରୁଛକି ଲଜ୍ଜା ବାସୁଦେବ ? ଆପଣାର ଅତ୍ୟଧିକ ଉଚ୍ଚାକାଂକ୍ଷା ପାଇଁ ଧ୍ୱଂସ କରିବାକୁ ଉଚିତ ଭାବିଲ ଶେଷେ ମହାଭାରତର ଏଇ ବିଶାଳ ସଂସ୍କୃତି । |
| କୃଷ୍ଣ | ଏହାଠାରୁ ଅଧିକ ଆଉ ଲଜ୍ଜିତ କରନା ମତେ ନିରୁପାୟ ମୁହିଁ । |
| କର୍ଣ୍ଣ | ଧ୍ୱଂସ କିବା ସର୍ଜନାର ଏକମାତ୍ର ପଥ । ଧର୍ମ ଆଉ ଧର୍ମରକ୍ଷାନାମେ ଏଇ ହତ୍ୟାରକ୍ତପାତ ନୁହଁଇକି ଅମର୍ଯ୍ୟାଦା ଆପଣା ଧର୍ମର । ଦୟାକରି ବନ୍ଦକର ଏହା । ରକ୍ଷାକର ଏଇ ପ୍ରାଚୀନ ସଂସ୍କୃତି ସଂସ୍କାରର ପଥ ଅନୁସରି । ଏହା ମୋର ଶେଷ ଅନୁରୋଧ । (ପ୍ରସ୍ଥାନ) |

## ୭ମ ଦୃଶ୍ୟ

### (କୌରବ ଦରବାର)

| | |
|---|---|
| ଦୁର୍ଯ୍ୟୋଧନ | ମନମୋର ଚଞ୍ଚଳ, ଉଦ୍‌ବିଗ୍ନ । କିବା ଶାନ୍ତିବାର୍ତ୍ତା ନେଇ ଆସିଛନ୍ତି କେଶବ, ହସ୍ତିନା ନଗରୀ । ମୁଁ ବଞ୍ଚିଥାଉଁ ଥାଉଁ ସବୁ ଷଡଯନ୍ତ୍ର ତାର କରିବି ନିଷ୍ଫଳ । କିନ୍ତୁ ମାତୁଳ ଶକୁନି କାହାନ୍ତି ଏ ଯାଏ ? |
| ଶକୁନି | ମାତୁଳ ଶକୁନି ସଦା ତୁମପାଖେ ପୁତ୍ର । |
| ଦୁର୍ଯ୍ୟୋଧନ | ମାତୁଳ ! ଅତ୍ୟନ୍ତ ବିବ୍ରତ ମୁହିଁ ସମ୍ମୁଖୀନ ହେବାକୁ କେଶବ । |
| ଶକୁନି | ହସ୍ତିନାପୁରର ଯୁବରାଜ ତୁମେ । ଛାର ଗୋପାଳବାଳକ ଲାଗି ହେଉଛି ବିବ୍ରତ ? |
| ଦୁର୍ଯ୍ୟୋଧନ | ବିବ୍ରତ ମୁଁ ନୁହେଁ କୃଷ୍ଣ ନାମେ । ଏକମାତ୍ର ଆଶଙ୍କା ମୋ ମନେ, କୃଷ୍ଣଙ୍କର ସନ୍ଧିବାର୍ତ୍ତା ପାଇଁ । କିଏ ଜାଣେ କେଉଁ କାରଣରେ ଆସିଅଛି ହସ୍ତିନାକୁ ଶାନ୍ତିଦୂତ ହୋଇ । ଛଳ ପ୍ରିୟ କେଶବର ଛଳବାକ୍ୟ ଶୁଣି କିଏ ଜାଣେ କି, ବିଚାର କରିବେ ସମସ୍ତେ । |
| ଶକୁନି | ସମସ୍ତେ ବା କିଏ ? ମହାମନ୍ତ୍ରୀ ବିଦୁରଙ୍କ ବ୍ୟତିରେକ ସମସ୍ତେ ଅଛନ୍ତି ଆମ ସପକ୍ଷରେ । ଭୟନାହିଁ ପୁତ୍ର ଶୁଣ ମନଦେଇ, |

| | |
|---|---|
| | କୃଷ୍ଣଙ୍କ ବକ୍ତବ୍ୟ ପରେ, ମହାମନ୍ତ୍ରୀ ଆଲୋଚନା କରିବା ପୂର୍ବରୁ ଆରମ୍ଭ କରିବ ତୁମେ ଯୁକ୍ତି ଅନର୍ଗଳ । ଅଛି ଏ ବିଶ୍ୱାସ ମୋର । ଯୁକ୍ତି ତୁମ ଅଭେଦ୍ୟ ଅକାଟ୍ୟ । |
| ଦୁର୍ଯ୍ୟୋଧନ | ତାପରେବି କର୍ଣ୍ଣପାତ ନ କରନ୍ତି ଯଦି ମହାମନ୍ତ୍ରୀ । |
| ଶକୁନି | ତାହେଲେ କରିବା ଆମେ ବାସୁଦେବେ ବନ୍ଦୀ । |
| କର୍ଣ୍ଣ | (ପ୍ରବେଶି) ଦୂତକୁ ବନ୍ଦୀ କରିବା ଅନ୍ୟାୟ ମାତୁଳ, ନୁହେଁ ରାଜଧର୍ମ । |
| ଶକୁନି | ରାଜଧର୍ମ ନୁହଁ ଅଙ୍ଗରାଜ, ରାଜନୀତି ଏହା । ରାଜନୀତି ରାଜରକ୍ଷାପାଇଁ, ରାଷ୍ଟ୍ରରକ୍ଷା ପାଇଁ । |
| ଦୁର୍ଯ୍ୟୋଧନ | ରାଜରକ୍ଷା ସାଥେ ଦୂତରବା ଅଛି କି ସଂପର୍କ ? |
| ଶକୁନି | ଶୁଣ ପୁତ୍ର, କୃଷ୍ଣ ଖାଲି ଦୂତ ନୁହେଁ, କୃଷ୍ଣ ଅଟେ ଅତ୍ୟନ୍ତ ମାୟାବୀ । ତେଣୁ ଦୂତକୁ ବନ୍ଦୀ କରିବା ନୁହଁଇ ଅନ୍ୟାୟ । |
| କର୍ଣ୍ଣ | ତଥାପି ......... ମାତୁଳ.......... ଏ ଅଟେ ଅଧର୍ମ.......... |
| ଶକୁନି | ନୀତି ରାଜନୀତି ମଧ୍ୟେ ଧର୍ମାଧର୍ମ ନୀତିବାକ୍ୟ ସବୁ ଦୁର୍ବଳତା ମାତ୍ର । ମନେରଖ ପୁତ୍ର । ରାଷ୍ଟ୍ର ରକ୍ଷା ରାଜାଙ୍କର ଏକାନ୍ତ କର୍ତ୍ତବ୍ୟ, ଏକମାତ୍ର ରାଜଧର୍ମ, ଏକମାତ୍ର ଧ୍ରୁବସତ୍ୟ ଅଟେ । |
| ନେପଥ୍ୟରୁ | ସାବଧାନ ! ମହାରାଜ ବିଜେ । (ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ପ୍ରବେଶ ଓ ଆସନ ଗ୍ରହଣ) ବିଦୁରଙ୍କ ସହ |
| ଶକୁନି | କୃଷ୍ଣ କାହାନ୍ତି ? |
| ବିଦୁର | ମହାରାଜ ଭଗବାନ୍ କୃଷ୍ଣ ଆସୁଛନ୍ତି ହସ୍ତିନାପୁରକୁ ତାଙ୍କୁ ସ୍ୱାଗତ କରିବାର ଆୟୋଜନ .......... |
| ଦୁର୍ଯ୍ୟୋଧନ | ମହାମନ୍ତ୍ରୀ, ପ୍ରଶ୍ନ ଏକ ମୋର......... । ଭଗବାନ କିଏ ? ଦାତା ନା ଯାଚକ, ପ୍ରଭୁ ଅବା ଦୂତ । ନୀରବେ ରହିଲେ କିଆଁ । ଅନୁରୋଧ ମୋର, ଅନ୍ୟର ଦୂତଭାବେ ଆସିଛି ଯିଏ ହସ୍ତିନାପୁରକୁ ଭିକ୍ଷାପାଇଁ, ଭିକ୍ଷାପ୍ରାର୍ଥୀ ସାମାନ୍ୟ ଦୂତକୁ, କୁରୁସଭା ମଧ୍ୟେ ଭଗବାନ ସମ୍ବୋଧନ, ମନେହୁଏ ଅପମାନ ସମଗ୍ର ସଭାକୁ । ମହାମନ୍ତ୍ରୀ ସଂଯତ କରନ୍ତୁ ଆଗେ ଶବ୍ଦ ବ୍ୟବହାର । |
| ବିଦୁର | ଯୁବରାଜ ଏହା ମୋର ଅନୁଭୂତିର ପରିପ୍ରକାଶ । |

| | | |
|---|---|---|
| ଦୁର୍ଯ୍ୟୋଧନ | | କାହା ଅନୁଭୂତି ? ବିଦୁରଙ୍କର ନା ମହାମନ୍ତ୍ରୀଙ୍କର ? ରାଜସଭା ମଧ୍ୟେ ବ୍ୟକ୍ତିଗତ ଚିନ୍ତାଠାରୁ ରାଜଚିନ୍ତା ଶ୍ରେଷ୍ଠତର । ଅନୁରୋଧ ମୋର ପାଣ୍ଡବ ଦୂତକୁ ଦୂତ ବୋଲି ସମ୍ବୋଧନ କରାଯିବା ଉଚିତ ତାଙ୍କର । |
| ବିଦୁର | | ମହାରାଜ ଗୁରୁଜନ ସିଏ । |
| ଦୁର୍ଯ୍ୟୋଧନ | | ଗୁରୁଲଘୁ ପ୍ରଶ୍ନ ନାହିଁ ଏଠି । ରାଜସଭା ଦିଏନା ସମ୍ମାନ ଗୁରୁଲଘୁ ଭେଦେ । ରାଜସଭା ଦିଅଇ ସମ୍ମାନ, ପଦବୀକୁ ପଦମର୍ଯ୍ୟାଦାକୁ । ସେ ହୁଏତ ହୋଇପାରେ ଗୁରୁଜନ ଅବା ଶ୍ରେଷ୍ଠଜନ । ତେଣୁ ମନ୍ତ୍ରୀ ସାମାନ୍ୟଦୂତକୁ ଭଗବାନ ଆଖ୍ୟାଦେବା ନୁହଁଇ ଉଚିତ୍ । |
| ଶକୁନି | | (ଚୁପଚୁପ୍ ଦୁର୍ଯ୍ୟୋଧନକୁ) ସାଧୁ..... ସାଧୁ ପୁତ୍ର, ସାଧୁ ତୁମ ଅକାଟ୍ୟ ଯୁକ୍ତିର ଜାଲ । ଏହିପରି ଧରିରଖି ଯୁକ୍ତିବାଣ ଜର୍ଜରିତ କରଆଜି ସମଗ୍ର ସଭାକୁ (ପ୍ରକାଶ୍ୟରେ) ଯୁବରାଜଙ୍କର ଯୁକ୍ତି ଅତ୍ୟନ୍ତ ଯଥାର୍ଥ । |
| କର୍ଣ୍ଣ | | ଯୁବରାଜ, ଦୂତବୋଲି ନ କହି ତାହାଙ୍କୁ ସମ୍ବୋଧନ କରାଯାଇପାରେ ଅବା ବାସୁଦେବନାମେ । |
| ଦୁର୍ଯ୍ୟୋଧନ | | ବାସୁଦେବ ନାମେ, କର ସମ୍ବୋଧନ ଦୂତେ । |
| ବିଦୁର | | ମହାରାଜ, ବାସୁଦେବ କୃଷ୍ଣ ଆସୁଛନ୍ତି ହସ୍ତିନା ସଭାକୁ ଶାନ୍ତିବାର୍ତ୍ତା ନେଇ । ତାହାଙ୍କୁ ସ୍ୱାଗତ କିବା ସାଧାରଣ ଦୂତ ଭାବେ ହେବ ସମୀଚିନ । |
| ଶକୁନି | : | ତା ଠାରୁ ଅଧିକ ହେଲେ, ମର୍ଯ୍ୟାଦା ରହିବନାହିଁ ହସ୍ତିନାପୁରର । |
| ଧୃତରାଷ୍ଟ୍ର | | କିନ୍ତୁ.......... |
| ଶକୁନି | | ଆଶଙ୍କା କି ଲାଗି ମହାରାଜ । କୃଷ୍ଣଙ୍କର ବିଶ୍ରାମ ଲାଗି, ମହାରାଜ ନିଜେ ଆୟୋଜନ କରିଥିଲେ ରାଜକୀୟ ଆତିଥ୍ୟ ତାଙ୍କର । ତାହାକୁ ଉପେକ୍ଷା କରି କୃଷ୍ଣ ଯେବେ ରହିଲେ ମନ୍ତ୍ରୀଙ୍କ ଗୃହେ । ଅପମାନ ହେଲାନିକି ହସ୍ତିନା ସଭାକୁ ? ଅବା କିଛି ଅପମାନ ବାକି ଅଛି ପାଇବାକୁ ଏଠି । |
| ନେପଥ୍ୟରୁ | : | ବାସୁଦେବ କୃଷ୍ଣ ବିଜେ । |

| | |
|---|---|
| ଶକୁନି | ଏଇତ ଆସିଲେଣି ବାସୁଦେବ, ସ୍ୱାଗତଂ.............. ସ୍ୱାଗତଂ । |
| ଧୃତ୍ରରାଷ୍ଟ୍ର | ଆସନ ଗ୍ରହଣ କରନ୍ତୁ । |
| କୃଷ୍ଣ | ଧନ୍ୟବାଦ.... । |
| ଧୃତରାଷ୍ଟ୍ର | ହେ ପାଣ୍ଡବର ଦୂତ, ହସ୍ତିନାର ଦରବାରେ କହିବାର ଯାହାଥିଲା, କୁହନ୍ତୁ ବିସ୍ତାରି । |
| କୃଷ୍ଣ | ପାଣ୍ଡବର ଶାନ୍ତିଦୂତ ହୋଇ ଆସିଛି ହସ୍ତିନା, ପାଣ୍ଡବ ଓ କୌରବଙ୍କ ମଧ୍ୟେ ଶାନ୍ତି ସନ୍ଧି ଚୁକ୍ତିପାଇଁ ପଥ ଖୋଲିବାକୁ । |
| ଧୃତରାଷ୍ଟ୍ର | ଏହି ଶାନ୍ତିଚୁକ୍ତି ପାଇଁ ଅଛି କିଛି ସର୍ତ୍ତ କିବା ଯୁଧିଷ୍ଠିରଙ୍କର ? |
| କୃଷ୍ଣ | କହିଛନ୍ତି ଯୁବରାଜ । ୧୩ ବର୍ଷ ବନବାସ ଯିବା ପୂର୍ବେ ଯାହାଥିଲା ତାଙ୍କ ଅଧିକାର, କୌରବଙ୍କ ସଭାରେ, ଚାହାନ୍ତି ସେ ସେହି ଅଧିକାର । (ଦୁର୍ଯ୍ୟୋଧନ ତାଚ୍ଛଲ୍ୟରେ ହସିଛି) |
| ଶକୁନି | ହୃତଧନ- ହୃତରାଜ୍ୟ- ହୃତ ଅଧିକାର, କରଇକି ଦାବୀକେହି, ବୀର ଅବା ଗୁଣିଜ୍ଞାନୀ ନର ? ହେ ପାଣ୍ଡବ ଦୂତ, ଜ୍ଞାନୀହୋଇ ବୃଥାଦାବୀ କରୁଛୁ କିମ୍ପାଇଁ ? |
| କର୍ଣ୍ଣ | ମହାରାଜ, ଯୁଧିଷ୍ଠିରେ, ଦେଇଥିଲେ ଯୁବରାଜ ପଦ । ଅସମର୍ଥ ଯିଏ ରକ୍ଷାକରିବାରେ ଆପଣାର ପଦ ଓ ମର୍ଯ୍ୟାଦା, କେଉଁ ମୁଖେ ପୂର୍ବପଦ ଦାବୀକରେ ସିଏ ? |
| କୃଷ୍ଣ | ସମସ୍ତେ ଜାଣନ୍ତି ତାହା, କେଉଁଭାବେ ବଞ୍ଚିତ କରିଛ ତୁମେ ପଣ୍ଡୁପୁତ୍ରେ । |
| ଶକୁନି | ଝିମିଟି ଖେଳରେ ସର୍ତ୍ତରଖି ଆପଣା ସର୍ବସ୍ୱ ନିଜକର୍ମ ଫଳେ ହରାଇଛନ୍ତି ସମସ୍ତଦାବୀ ପାଣ୍ଡବେ ଅବହେଳେ । |
| କର୍ଣ୍ଣ | ସେଥିଲାଗି ଦାୟୀ କିବା କେବଳ କୌରବ ? ଆଉ ପାଣ୍ଡବେ ତୁମର ଅବା ଦୁଗ୍ଧ ପୋଷ୍ୟ ଶିଶୁ ? |
| କୃଷ୍ଣ | ମୁଁ ମାନୁଚି ପାଣ୍ଡବଙ୍କ ଦୁର୍ବଳତା ଥାଇପାରେ କିଛି । ସର୍ତ୍ତ ଅନୁସାରେ ୧୩ ବର୍ଷ ବନବାସ କରିଛନ୍ତି ଭୋଗଯେଣୁ ସେ ସମସ୍ୟା ହୋଇଛି ଅତୀତ । ଏବେ ସେ ଚାହାନ୍ତି ପାଣ୍ଡୁପୁତ୍ରଭାବେ ପାଣ୍ଡୁଙ୍କର ନ୍ୟାଯ୍ୟଦାବୀ ନ୍ୟାଯ୍ୟ ଅଧିକାର । |

| | |
|---|---|
| ଦୁର୍ଯ୍ୟୋଧନ | (ହସ) ପାଣ୍ଡୁଙ୍କର ନ୍ୟାଯ୍ୟ ଅଧିକାର ପାଣ୍ଡୁପୁତ୍ରେ ? ପାଣ୍ଡୁପୁତ୍ର କିଏ କାହିଁ ପଞ୍ଚଭ୍ରାତା ମଧ୍ୟେ ଜ୍ୟେଷ୍ଠ ଭ୍ରାତା ଯୁଧିଷ୍ଠିର ଧର୍ମଙ୍କର ପୁତ୍ର ହେତୁ ଧର୍ମପୁତ୍ର ନାମେ ଖ୍ୟାତ ସମସ୍ତ ଭୁବନେ । ଭୀମସେନ ପବନ ନନ୍ଦନ, ଆଉ ତୁମ ସଖା ? ସିଏ ଇନ୍ଦ୍ରଙ୍କ ନନ୍ଦନ । |
| କୃଷ୍ଣ | ଆଉ କିଛି କହିବାର ପ୍ରୟୋଜନ ନାହିଁ । ବୁଝିଗଲି ତୁମର ଉଦ୍ଦେଶ୍ୟ । କୌଣସିମତେ ବଞ୍ଚିତ କରିବାକୁ ଚାହଁ ତୁମେ ପଂଚ ଭ୍ରାତା ନ୍ୟାଯ୍ୟ ଅଧିକାର । |
| ଶକୁନି | କିବା ଅଧିକାର ? କାହା ଅଧିକାର ? ପାଣ୍ଡୁଙ୍କର ପୁତ୍ର ଯଦି କେହିନାହିଁ, କିଏ ବା ପାଇବ ତାଙ୍କ ଅଧିକାର ? |
| ଦୁର୍ଯ୍ୟୋଧନ | (ହସି) |
| ବିଦୁର | ଆପଣା ବଂଶର ଅମର୍ଯ୍ୟାଦା କରନାହିଁ, ଯୁବରାଜ । |
| ଦୁର୍ଯ୍ୟୋଧନ | ନୁହଁକି ଏହା ସତ୍ୟ ମହାମନ୍ତ୍ରୀ ? |
| କୃଷ୍ଣ | ଅବଶ୍ୟ ତା ସତ୍ୟ ଯୁବରାଜ । ସେହିପରି କୁରୁବଂଶ ଇତିହାସ ପଢି ପଚାର ପିତାଙ୍କୁ, ପଚାର ମାତାଙ୍କୁ, ମାତା ଅମ୍ବିକା ଓ ଅମ୍ବାଳିକାଙ୍କ ଗର୍ଭୁ ବ୍ୟାସଙ୍କ ଔରସରୁ ଜନ୍ମହୋଇ ଧୃତରାଷ୍ଟ୍ର ଏବଂ ପାଣ୍ଡୁ କେଉଁ ଅଧିକାର ବଳେ ମହାରାଜ ବିଚିତ୍ରବୀର୍ଯ୍ୟଙ୍କ ସିଂହାସନ କଲେ ଆରୋହଣ । |
| ଧୃତରାଷ୍ଟ୍ର | ଆଃ....... ବନ୍ଦକର । |
| ବିଦୁର | ବନ୍ଦକର ବାସୁଦେବ । ଅନୁରୋଧ କରୁଛି ତୁମକୁ । କୌରବ ବଂଶର ଅମର୍ଯ୍ୟାଦା କରନାହିଁ ଆଉ । |
| କର୍ଣ୍ଣ | ଯୁବରାଜ, ସଖା ! ଏପରି ସମୟର ଅପଚୟ କରି କିଛି ଲାଭ ନାହିଁ । କୁହ କୃଷ୍ଣ ସଂକ୍ଷେପରେ ପାଣ୍ଡବଙ୍କ ଉକ୍ତି । |
| କୃଷ୍ଣ | ଯୁଧିଷ୍ଠିରଙ୍କର ଏକମାତ୍ର ସର୍ତ୍ତ । ମହାରାଜ ଅର୍ଦ୍ଧରାଜ୍ୟ ପାଣ୍ଡୁପୁତ୍ରେ ଦେଇ, ବାକି ଅର୍ଦ୍ଧରାଜ୍ୟ କୌରବକୁ କରନ୍ତୁ ପ୍ରଦାନ । |
| ଦୁର୍ଯ୍ୟୋଧନ | (ରାଗରେ) ଅସମ୍ଭବ ତାହା । ଯୁଧିଷ୍ଠିରଙ୍କର ଏଇ ଯଦି ସର୍ତ୍ତ, ତାହେଲେ ଆଗ୍ରହ୍ୟ କରିବି ତାହା । ରାଜ୍ୟ ବିଭାଜନ ପାଇଁ ଷଡଯନ୍ତ୍ର କରୁଥିବା ହେ ବିଛିନ୍ନତାବାଦୀ, କହିବ ପାଣ୍ଡବେ, |

କୁରୁରାଜ୍ୟ ନୁହଁଇ ଦ୍ରୌପଦୀ । ଭାଗଭାଗ କରିତାକୁ ଭୋଗକରୁଥିବେ ପଞ୍ଚଭ୍ରାତା ନିଜ ଇଚ୍ଛାମତେ ।

କୃଷ୍ଣ — ସ୍ତବ୍ଧହୁଅ ଦୁର୍ଯ୍ୟୋଧନ ...........

ଦୁର୍ଯ୍ୟୋଧନ — ସତ୍ୟ ବାକ୍ୟ ଲାଗୁଛିକି କଟୁ ।

କର୍ଣ୍ଣ — ସ୍ଥିର ହୁଅ ସଖା ।

ବିଦୁର — କୁହନ୍ତୁ କେଶବ, ଅନ୍ୟ କିଛି ଅଛିକି ପ୍ରାର୍ଥନା ।

କୃଷ୍ଣ — ଅତ୍ୟନ୍ତ ବିନୟୀଭାବେ କହିଛନ୍ତି ଯୁଧିଷ୍ଠିର ମତେ, ସଖା, କହିବ ବୁଝାଇ ଜ୍ୟେଷ୍ଠ ତାତେ, ଶାନ୍ତି ଆମ ଚାହୁଁ ସର୍ବେକ୍ଷଣ । ଶାନ୍ତି ପାଇଁ କୌରବ ପାଣ୍ଡବ ହେଲେ ରାଜି ଚିରଦିନ ଲିଭିଯିବ ଭ୍ରାତୃବିବାଦର ଅଗ୍ନି । ସେଥିପାଇଁ ଅନ୍ୟ ଏକ ପ୍ରସ୍ତାବ ଅବଶ୍ୟ ରହିଛି ।

ଧୃତରାଷ୍ଟ୍ର — କୁହନ୍ତୁ ଚଞ୍ଚଳ । ଆମେ ମଧ୍ୟ ଚାହୁଁ ଶାନ୍ତି । କିନ୍ତୁ ଅସମ୍ଭବ ସର୍ତ୍ତ କିଛି ଥାଏ ଯଦି .....

କୃଷ୍ଣ — କହିଛନ୍ତି ଯୁଧିଷ୍ଠିର, ଜ୍ୟେଷ୍ଠ ପିତା ଯଦି ନ ହୁଅନ୍ତି ରାଜି, ଦେବାପାଇଁ ଅର୍ଦ୍ଧରାଜ୍ୟ ପାଣ୍ଡବଙ୍କ ଲାଗି, ଆମ ପାଞ୍ଚଭାଇ ପାଇଁ ପାଞ୍ଚଖଣ୍ଡି ଗ୍ରାମ ଭିକ୍ଷା ଦେବେ ମତେ । ସେଇଥିରେ ରହିବୁ ସନ୍ତୁଷ୍ଟ ଆମେ ।

କର୍ଣ୍ଣ — ମାତ୍ର ପାଞ୍ଚଖଣ୍ଡି ଗ୍ରାମ ଚାହିଁଛନ୍ତି ଯୁଧିଷ୍ଠିର । ତାହାପୁଣି ଭିକ୍ଷା ଭାବେ ? ହାଃ..... ଧିକ୍..............

ବିଦୁର — ଏ ଅତି ଉତ୍ତମ କଥା ମହାରାଜ । ମୋ ମତରେ କୌରବଙ୍କ ବିଶାଳ ସାମ୍ରାଜ୍ୟ ମଧ୍ଯୁ ପାଞ୍ଚଖଣ୍ଡ ଗ୍ରାମମାତ୍ର ଦିଆଯାଇପାରେ ।

ଧୃତରାଷ୍ଟ୍ର — ପାଞ୍ଚଖଣ୍ଡି ଗ୍ରାମ ମାତ୍ର ଭିକ୍ଷା ଭାବେ ଦିଆଯାଇପାରେ ।

**(କୃଷ୍ଣ ଶକୁନିକୁ ଚାହିଁବା)**

ଶକୁନି — (ଚୁପଚୁପ୍ ଦୁର୍ଯ୍ୟୋଧନଙ୍କୁ) ନୀରବେ ବସିଛ କିଆଁ ପୁତ୍ର । ଭାବିଛକି ମନେ, ପାଞ୍ଚଖଣ୍ଡିଗ୍ରାମ ପାଇଁ ଲଢିବ କିମ୍ପାଇଁ ? ଭାବିଦେଖ ଯୁବରାଜ, ପାଞ୍ଚଖଣ୍ଡି ଗ୍ରାମ ନାମେ କୃଷ୍ଣ ଯଦି ଚାହାଁନ୍ତି ତୁମର ସମସ୍ତ ନଗରୀ ?

ଦୁର୍ଯ୍ୟୋଧନ — ସମସ୍ତ ନଗରୀ ? ବୁଝିପାରୁନାହିଁ ମୁହିଁ ?

ଶକୁନି ହସ୍ତିନା, ବାରୁଣାବନ୍ତ, ଇନ୍ଦ୍ରପ୍ରସ୍ଥ, ବାୟୁପ୍ରସ୍ଥ, ଯମପ୍ରସ୍ଥ ଭଳି ପାଞ୍ଚଟି ନଗରୀ ଯଦି ଚାହାନ୍ତି କେଶବ ?

ଦୁର୍ଯ୍ୟୋଦନ ଅସମ୍ଭବ ।

ଶକୁନି ତା ହେଲେ ତୁମେ ବଞ୍ଚିବ କିପରି ? ରହିବ କେଉଁଠି ତୁମେ ? କେଉଁ ରାଜ୍ୟେ କରିବ ରାଜତ୍ୱ ? ମହାରାଜ ବୋଲାଇବ କେଉଁ ସାମ୍ରାଜ୍ୟରେ ? ନୀରବେ ବସିଛ କିଆଁ ତେବେ ? କରୁଛବା କାହର ପ୍ରତୀକ୍ଷା ? ଏଇଦେଖ, ମହାମନ୍ତ୍ରୀ ଦେଉଛନ୍ତି ବଚନ କୃଷ୍ଣଙ୍କୁ ।

ବିଦୁର କୁହ ବାସୁଦେବ । କେଉଁ ପାଞ୍ଚଖଣ୍ଡି ଗ୍ରାମ ମାଗିଛନ୍ତି ପ୍ରିୟ ଯୁଧିଷ୍ଠିର ।

ଦୁର୍ଯ୍ୟୋଧନ ଅପେକ୍ଷା କରନ୍ତୁ ମହାମନ୍ତ୍ରୀ । ପ୍ରଶ୍ନ ଏକ ଅଛି ମୋର ପାଣ୍ଡବ ଦୂତଙ୍କୁ । କୁହ ଦୂତ, ପାଞ୍ଚଖଣ୍ଡି ଗ୍ରାମ ଯାହା ପାଇବେ ପାଣ୍ଡବେ, ରହିବତ ସେହିଗ୍ରାମ ଏ ରାଜ୍ୟର ଅଧୀନସ୍ଥ ହୋଇ । ରାଜ୍ୟାନୁଶାସନ ମାନି ଚଳିବେତ ପଣ୍ଡୁ ପୁତ୍ରଗଣ ? ପ୍ରତିବର୍ଷ ଶେଷେ ହସ୍ତିନାର ରାଜକୋଷେ ଦେଇଯିବେ ଆସି ତାଙ୍କ ନ୍ୟାଯ୍ୟ କର । କୁହ କୃଷ୍ଣ ଯୁଧିଷ୍ଠିର ରାଜିତ ଏଥିରେ ?

କୃଷ୍ଣ ଯୁବରାଜ ! ଯୁଧିଷ୍ଠିର ଚାହାଁନ୍ତି ତାଙ୍କର ସାର୍ବଭୌମ ଅଧିକାର । ହେଉ ତା ରାଜ୍ୟ ଅବା ଗ୍ରାମ । ହସ୍ତିନାର ରାଜଶକ୍ତି କରିବନି ହସ୍ତକ୍ଷେପ କେବେ ତାଙ୍କ ସ୍ୱାଧୀନତା ପରେ ।

ଶକୁନି ଅସମ୍ଭବ ଏହା ।

ଦୁର୍ଯ୍ୟୋଧନ : ଜାଣନାକି ଦୂତ ସାର୍ବଭୌମ କୁରୁରାଜ୍ୟ, ଅବିଚ୍ଛିନ୍ନ, ଅଖଣ୍ଡ ସାମ୍ରାଜ୍ୟ । ଖଣ୍ଡ ଖଣ୍ଡ କରି ସେହି ସାର୍ବଭୌମ ରାଜ୍ୟ ବିଚ୍ଛିନ୍ନତାବାଦୀର ଏଇ ଉଦ୍ଭଟ ଚିନ୍ତାରେ ଯଦି ବାଣ୍ଟିବାକୁ ହୁଏ ତାହେଲେ ତାହାକୁ ଭାଗ କରିବାକୁ ହେବ ଏକଶତ ପଞ୍ଚ ବିଭାଗରେ ।

ବିଦୁର ତାହାକେବେ ହେବକି ସମ୍ଭବ ?

କର୍ଣ୍ଣ ଯୁବରାଜଙ୍କ ଯୁକ୍ତି ଅତ୍ୟନ୍ତ ଯଥାର୍ଥ । କୁରୁରାଜ୍ୟ ଯଦି ଦେଇପାରେ ପାଞ୍ଚଖଣ୍ଡି ଗ୍ରାମ ପାଣ୍ଡବର ପଞ୍ଚଭ୍ରାତା ନାମେ, ତା

| | |
|---|---|
| | ହେଲେ କିଆଁ ନ ପାଇବେ ତାଙ୍କ ଅଧିକାର କୌରବର ଏକଶତ ଭ୍ରାତା । |
| ଶକୁନି | ଏହିପରି ଭାଗ ଯଦି ହୋଇବ ହସ୍ତିନା ରାଜ୍ୟ । ତାହାର ତେବେ ଅଧିପତି ହେବ କିଏ ? |
| କୃଷ୍ଣ | ସେ କଥା ଜାଣନ୍ତୀ, ମହାରାଜ ଅବା ମନ୍ତ୍ରୀ ପରିଷଦ । |
| ଦୁର୍ଯ୍ୟୋଧନ | ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପୀ ଗରୀୟସୀ, ସେହି ଜନ୍ମଭୂମି ହେବ ଖଣ୍ଡ ବିଖଣ୍ଡିତ । ମୁଁ ଜୀବିତ ଥିବାଯାକେ ହେବନାହିଁ ତାହା । ହୁଏତ କୌରବ ନତୁବା ପାଣ୍ଡବ ରାଜତ୍ୱ କରିବେ ହସ୍ତିନାରେ । କିନ୍ତୁ ମୁଁ ବଞ୍ଚିଥିବାଯାକେ ଖଣ୍ଡବିଖଣ୍ଡିତ ହେବନାହିଁ କେବେ ହସ୍ତିନା ସାମ୍ରାଜ୍ୟ । |
| କୃଷ୍ଣ | ଶୁଣ ଦୁର୍ଯ୍ୟୋଧନ, ପାଞ୍ଚଖଣ୍ଡି ଗ୍ରାମ ମାଗିଛନ୍ତି ବୋଲି ଭୀରୁ ମନେକରନାହିଁ ପାଣ୍ଡବଙ୍କୁ । ପାଣ୍ଡବେ ଚାହିଁବେ ଯଦି ମୁହୂର୍ତ୍ତ ମଧ୍ୟରେ ହସ୍ତିନାକୁ କରିବେ ଆୟତ୍ତ । |
| କର୍ଣ୍ଣ | ପାଣ୍ଡବଙ୍କ ଏତେ ଶକ୍ତି ଯଦି, ଭିକ୍ଷା ପାତ୍ର ଧରି ଆସିଚ କି ଲାଗି ଭୀକ୍ଷାର୍ଥୀ ଭାବରେ ? |
| କୃଷ୍ଣ | ଆସିଥିଲି ଦେଖିବାକୁ କୌରବଙ୍କ ଅଭିପ୍ରାୟ । ଯେଉଁ ମାତୃଭୂମି ଗର୍ବରେ ବଞ୍ଚିତ କରୁଚ ତୁମେ ପାଣ୍ଡବଙ୍କ ଅଧିକାର, ସେହି ବକ୍ଷଦିନେ ହେବ ତୁମ ରକ୍ତରେ ରଞ୍ଜିତ । |
| କର୍ଣ୍ଣ | ସେତ ମୋର ଭାଗ୍ୟ । ଜନ୍ମଭୂମି ରକ୍ଷାପାଇଁ ବୀରଗତି ପ୍ରାପ୍ତହେବ ମୋର । ତଥାପି ଭିକ୍ଷାପାଇଁ ଆସିବନି ତୁମ ପାଣ୍ଡବଙ୍କ ଦରବାରେ କେବେ । |
| କୃଷ୍ଣ | ଜାଣନାକି ଅର୍ଜୁନଙ୍କ ପରାକ୍ରମ ? ଯୁଦ୍ଧକ୍ଷେତ୍ରେ ଅବିଳମ୍ୱେ ନାଶିବ ତୁମ୍ଭଙ୍କୁ । ଭୀମର ଶପଥ କଥା ମନେଥିବ ନିଶ୍ଚେ । ଗଦାଘାତେ ଲୁଣ୍ଠିତ କରିବ ତୁମ ଯୁବରାଜ ଶିର । |
| ଦୁର୍ଯ୍ୟୋଧନ | ଅହଂକାରୀ ଦୂତ, ଶାନ୍ତି ନାମେ ଆସିଛ ଏଠାକୁ କୌରବଙ୍କୁ ଯୁଦ୍ଧପାଇଁ ଆହ୍ୱାନ ଦେବାକୁ । ଯଦି ଏତେ ଯୁଦ୍ଧର ବାସନା ଥିଲ ପାଣ୍ଡବର ଦ୍ରୌପଦୀର ପଣତ ତଳେ ଲୁଚିରହି ତୁମକୁ ସେ ପଠାଇଲେ କିଆଁ ଭିକ୍ଷା କରିବାକୁ । |

| | |
|---|---|
| କୃଷ୍ଣ | ଯାଉଅଛି ମୁଁ ତେବେ ମହାରାଜ । ପୁଣି ଦେଖାହେବ କୌରବ ଓ ପାଣ୍ଡବର ଯୁଦ୍ଧକ୍ଷେତ୍ରେ ଦିନେ । ସେହିଦିନ ପ୍ରତିଶୋଧ ନେବିମୁହିଁ ହସ୍ତିନା ସଭାର । |
| ଶକୁନି | (ଚୁପଚୁପ୍) ଶୁଣ ପୁତ୍ର । ଯିବାପାଇଁ ଦିଅନାହିଁ କୃଷ୍ଣଙ୍କୁ । ଶୀଘ୍ର ବନ୍ଦୀକର ତାଙ୍କୁ । |
| ଦର୍ଯ୍ୟୋଧନ | କୁଆଡେ ଯିବହେ ଉଦ୍ଧିଷ୍ଟ ପୁରୁଷ କୁରୁ ସଭାଛାଡି । କିଏ ଅଛି ବନ୍ଦୀ କର ଦୂତେ । (ଯୁଦ୍ଧ ଓ କୃଷ୍ଣଙ୍କର ପ୍ରତିରୋଧ) |

## ଶେଷଦୃଶ୍ୟ
## (ପାଣ୍ଡବଙ୍କ ଶିବିର)

| | |
|---|---|
| ଦ୍ରୌପଦୀ | ଶୁଣିଲେଣି ମହାରାଜ ! ଏଇମାତ୍ର ଆସିଚି ସମ୍ବାଦ ଯାହା ହସ୍ତିନାରୁ ଅବିଶ୍ୱାସ୍ୟ ମନେହୁଏ ମୋତେ । |
| ଯୁଧିଷ୍ଠିର | କି ସମ୍ବାଦ ପ୍ରିୟେ ? ମାତା କୁନ୍ତୀ- ପିତାମହ ଭୀଷ୍ମ, ଜ୍ୟେଷ୍ଠ ପିତା ଆଦି ଅଛନ୍ତିତ କୁଶଳରେ ସବୁ ? |
| ଦ୍ରୌପଦୀ | ସେମାନେ ଅଛନ୍ତି କୁଶଳେ । କିନ୍ତୁ ମନା ମୋର ନ ମାନି ଆପଣ ହସ୍ତିନାର ଦରବାରେ ପଠାଇଲେ କୃଷ୍ଣ ବାସୁଦେବେ । |
| ଯୁଧିଷ୍ଠିର | କି ହୋଇଛି ପ୍ରିୟେ ? ଘଟିଛିକି ଅଘଟଣ କିଛି ? |
| ଦ୍ରୌପଦୀ | କୌରବେ କରିଛନ୍ତି ବନ୍ଦୀ ବାସୁଦେବେ । |
| ଯୁଧିଷ୍ଠିର | ଦୂତଙ୍କୁ ବନ୍ଦୀ କରିବା ଏକାନ୍ତ ଅନ୍ୟାୟ । |
| ଦ୍ରୌପଦୀ | ଯେଉଁ ରାଜସଭା ନାରୀର ଲଜ୍ଜାକୁ ଲୁଣ୍ଠନ କରିବାପାଇଁ ପ୍ରତିବାଦ କରେନାହିଁ, ସେଠାରେ କରିବ କିଏ ନ୍ୟାୟ ଆଉ ଅନ୍ୟାୟର ବିଚ୍ଚର । |
| ଯୁଧିଷ୍ଠିର | କୃଷ୍ଣଙ୍କୁ ବନ୍ଦୀକରିବା ଅସମ୍ଭବ । |
| ଦ୍ରୌପଦୀ | ଦୂତ ଆସି ଦେଇଛି ସମ୍ବାଦ, ଯାହା ତୁରନ୍ତ ଏହାର ପ୍ରତିକାର ନ କଲେ, ପାଣ୍ଡବେ ହୁଏତ ହରାଇବେ ଚିରଦିନପାଇଁ ପାଣ୍ଡବ ସଖାକୁ । |
| ଯୁଧିଷ୍ଠିର | (କ୍ରୋଧରେ) ଅସମ୍ଭବ ଏହା । କୃଷ୍ଣ ଖାଲି ପାଣ୍ଡବର ସଖା ନୁହେଁ, ପାଣ୍ଡବର ଗୁରୁ, ପ୍ରଭୁ ସିଏ । ପାଣ୍ଡବେ କେବଳ ସହିଯିବେ ଆପଣାର ଅପମାନ ସିନା, ସହିବେନି ପ୍ରଭୁଙ୍କର |

| | |
|---|---|
| | ଅପମାନ କେବେ । |
| ଦ୍ରୌପଦୀ | ବିଶ୍ୱାସ ହୁଏନି ମନେ । |
| ଯୁଧିଷ୍ଠିର | ଅବିଶ୍ୱାସ ମନେହୁଏ ଯଦି, ସୂର୍ଯ୍ୟ, ଚନ୍ଦ୍ର, ସାକ୍ଷୀରଖି କରୁଛି ଶପଥ, ଅବିଳମ୍ୱେ ନିଶ୍ଚୟ କରିବି ଯୁଦ୍ଧ କୌରବଙ୍କ ବିରୁଦ୍ଧରେ । |
| କୃଷ୍ଣ | (ପ୍ରବେଶୀ) ଅବଶ୍ୟ କରିବ ଯୁଦ୍ଧ, କିନ୍ତୁ ମନେରଖ- ଧର୍ମଯୁଦ୍ଧ ନାମେ କର ଯୁଦ୍ଧର ଘୋଷଣା । ଜାଣନ୍ତୁ ସମସ୍ତେ ସାରାବିଶ୍ୱେ ଧର୍ମରକ୍ଷାଲାଗି ତୁମେ ଧରିଅଛ ଅସ୍ତ୍ର । ପ୍ରଚାର କର ସର୍ବତ୍ର ଗୁରୁ କହିଛନ୍ତି........ |
| କୋରସ | ଯଦା ଯଦାହି ଧର୍ମସ୍ୟ<br>ଗ୍ଲାନିର୍ଭବତି ଭାରତ<br>ଆ............. ଆ......... ଆ........ଆ..........<br>ଅଭ୍ୟୁତ୍ଥାନଂ ଅଧର୍ମସ୍ୟ<br>ତଦାତ୍ମାନଂ ସୃଜାମ୍ୟହଂ<br>ପରିତ୍ରାଣାୟ ସାଧୂନାଂ<br>ବିନାଶାୟଚ ଦୁଷ୍କୃତାମ୍<br>ଧର୍ମସଂସ୍ଥା ପନାର୍ଥାୟ<br>ସମ୍ଭବାମି ଯୁଗେ ଯୁଗେ ।<br>ଆ....... ଆ......... ଆ......ଆ........ |

..... ସମାପ୍ତ..........

# ସ୍ୱାଭିମାନ

## ପାତ୍ର ପରିଚୟ

୧. କୋରସ — କିଛି ଝିଅ, ପୁଅ ନିଜ ନିଜ ପୋଷାକରେ ବା School Uniform ରେ ରହିବେ ।

୨. ବାପା - — ମିନୁର ବାପା, ମଧ୍ୟମ ବୟସ୍କ, ୪୦/୫୦ ଭିତରେ

୩. ବୁଢା- — ମିନୁ ଗାଁରେ ଥିବା ଘରେ ଚାକର ଦେଖାଶୁଣା କରେ ବୟସ ୬୦-୬୫ ଭିତରେ

୪. ମା- — ମିନୁର ମା, ଆଧୁନିକା ବୟସ୍କା, ୩୦/୩୫ ଭିତରେ

୫. ସୁପରିଟେଣ୍ଡେଣ୍ଟ - ମଧ୍ୟମ ବୟସ୍କ ୪୦-୪୫ ବୟସ ଭିତରେ

୬. ହରିଆ - — ଚାକର ୨୨ ଭିତରେ

୭. ମିନୁ- — ଝିଅ ବୟସ ୧୬-୧୭ ଭିତରେ

୮. ପୋଲିସ୍ - — ବୟସ ୨୮-୩୦ ଭିତରେ

୯. ଚମ୍ପା- — ବୟସ ୩୦ ଭିତରେ ସେ ଦଲାଲି କରେ ।

(ଅନ୍ୟାନ୍ୟ ଚରିତ୍ର ସବୁ ସେଇ Chorus ରୁ ବାହରି ଅଭିନୟ କରିବେ ଓ Chorus ସାଙ୍ଗରେ ମିଶିଯିବେ, ଯଥା : ନେତା, T.T.C., Platform ରେ ବିକାଳି, ଯାତ୍ରୀ,ଷ୍ଟେସନ ମାଷ୍ଟର ଇତ୍ୟାଦି, ଇତ୍ୟାଦି)

# ସ୍ୱାଭିମାନ

## ପ୍ରଥମ ଦୃଶ୍ୟ

(ମଞ୍ଚ ଆଲୋକିତ ହେବା ବେଳକୁ ଦେଖାଯାଏ କିଛି ଝିଅ ଗୀତ ଗାଇ ନାଚୁଛନ୍ତି)

ଗୀତ

କୁଆଁର ପୁନେଇଁ ଜହ୍ନଲୋ, ଫୁଲ ବଉଳବେଣୀ,
କୁଆଁର କୁଆଁରୀ ହସ କଉତୁକେ (୨)
ରାତି ମଣୁଥାଉଁ ଦିନଲୋ, ଫୁଲ ବଉଳବେଣୀ ।
ଗଜୁରିଲା ତାଳ ଗଜାଲୋ, ଫୁଲ ବଉଳବେଣୀ,
ବୋହୁ ଭାର ହାଣ୍ଡି ସଜାଡା ପାଇଁକି (୨)
କିଣି ଆଣିଥିଲେ ଅଜାଲୋ, ଫୁଲ ବଉଳବେଣୀ ।
ବଉଳ ଗଛର ଛାଇଗୋ, ଫୁଲ ବଉଳବେଣୀ,
ପତରେ ଗହଳେ ପୁନିଅଁ ଚାନ୍ଦଟି (୨)
ଲୁଚକାଳି ଖେଳୁଥାଇଗୋ, ଫୁଲ ବଉଳବେଣୀ ।
ଯମୁନା କୂଳେ କାଳିଆଗୋ, ଫୁଲ ବଉଳବେଣୀ,
ରାଧା ରାଧା ବୋଲି ବଇଁଶୀ ବଜାଏ (୨)
ଗହଳ ଫୁଲମାଳିଆ ଗୋ, ଫୁଲ ବଉଳବେଣୀ ।
ଧୋବ ଫର ଫର ଜହ୍ନଗୋ, ଫୁଲ ବଉଳବେଣୀ,
ରାଧା ରାଣୀ ମନ ଘରେକି ରହିବ (୨)
ନ ଦେଖି କଳା ବଦନ ଗୋ, ଫୁଲ ବଉଳବେଣୀ ।

(ମିନୁ, ନାଚ ଦେଖୁଥିବା ବେଳେ, ପ୍ରବେଶ କରନ୍ତି ବାପା...)

ବାପା : ମିନୁ.... ମିନୁ ତୁ' ପୁଣି ଏଠିକି କାହିଁକି ଆସିଲୁ ?
ମିନୁ : ବାପା...
ବାପା : ତତେ ପରା ବାରମ୍ବାର ମନା କରିଥିଲି.. ବାହାରକୁ ବାହରିବୁନି....
ମିନୁ : ମୁଁ କ'ଣ ଖେଳି ପାରିବିନି... ?
ବାପା : ନା ।
ମିନୁ : କାହିଁକି ବାପା ?
ବାପା : କାରଣ ତୁ ଗୋଟିଏ ଝିଅ ପିଲା ।
ମିନୁ : ଝିଅ ପିଲାଙ୍କର କ'ଣ କିଛି ଅଧିକାର ନାହିଁ ।
ବାପା : ନା.. ତୋର ନାହିଁ...

ମିନୁ : କାହିଁକି ବାପା ?

ବାପା : କାରଣ ତୁ କ'ଣ ଜାଣିନୁ, ତୁ ଗୋଟାଏ ବିକଳାଙ୍ଗ । ତୋତେ ବାହାରକୁ ଆସିବାର ଅଧିକାର ଦେଲା କିଏ ? ଶୁଣୁଛ... ଶୁଣୁଛ...

(ମିନୁର ମା' ପ୍ରବେଶ କରନ୍ତି)

ମା : କ'ଣ ହେଲା ?

ବାପା : ତୁମକୁ କେତେଥର କହିଲି, ତାକୁ ଘର ଭିତରେ ବନ୍ଦ କରି ତାଲା ଦେଇ ରଖ ।

ମା : ମୁଁ ତ ତାକୁ ବନ୍ଦ କରି ରଖିଛି ।

ବାପା ତା'ହେଲେ ସେ ଏଠିକି ଆସିଲା କେମିତି ?

ମିନୁ : ଘର ବନ୍ଦ କରି କ'ଣ ସ୍ୱପ୍ନ ଦେଖିବା ବନ୍ଦ କରିହୁଏ ବାପା ?

ବାପା : ଚୁପ୍‌କର । ତୋତେ ଶେଷଥର ପାଇଁ କହିଦେଉଛି, ତୋର ସ୍ୱପ୍ନ ଦେଖିବା ମନା ।

ମିନୁ : ବାପା...

ବାପା : ତୋତେ ପାଣି ପବନ ମନା । ତୋତେ ସୂର୍ଯ୍ୟ ଆଲୋକ ମନା, ତୋତେ ମୁକ୍ତ ଆକଶ ମନା, ତୋତେ ଏ ସଭ୍ୟ ସମାଜ ମନା ।

(ବାପା ମିନୁକୁ ଟାଣି ଟାଣି ଘର ଭିତରକୁ ନେଇ ଯାଇଛନ୍ତି)

## ଦ୍ୱିତୀୟ ଦୃଶ୍ୟ

(ଅର୍ଦ୍ଧ ଆଲୋକିତ ଅବସ୍ଥାରେ ଦେଖାଗଲା ମଞ୍ଚରେ ବୁଢା ଲୋକଟି ସ୍ୱପ୍ନରେ ଚିତ୍କାର କରି ଉଠିଲେ)

ବୁଢା : ମିନୁ... ମିନୁ.... ମିନୁ...ଓ.. ମୁଁ ତାହେଲେ ସ୍ୱପ୍ନ ଦେଖୁଥିଲି । ମୋ' ମିନୁର ନିଶ୍ଚୟ ଅସୁବିଧା ହେଉଛି । ମୋ' ମିନୁ ନିଶ୍ଚୟ ମୋତେ ଖୋଜୁଛି । ମୋତେ ଭୁବନେଶ୍ୱର ଯିବାକୁ ପଡିବ ।

(ବୁଢା ଗଣ୍ଠିଲି ସଜ କରି, ଭୁବନେଶ୍ୱର ବାହାରିଲା ଏବଂ ଚାଲି ଚାଲି ରେଳଷ୍ଟେସନ୍‌ରେ ପହଞ୍ଚିଲା)

(ଏଠାରେ ବୁଢାର ଚାଲି MIME ରେ କରାଯାଇପାରିବ) (ରେଳ ଷ୍ଟେସନ୍‌ର ଦୃଶ୍ୟ) (Chorus ମାଧ୍ୟମରେ ପାନ, ଚା, କାଗଜ, ଆଦି ବିକ୍ରି କରାଯାଇପାରିବ ।)

ବୁଢା : ଭୁବନେଶ୍ୱରକୁ ଗୋଟିଏ ଟିକଟ ।

(ଟିକଟ କାଟି ସାରିବା ପରେ ବୁଢାର ପ୍ଲାଟଫର୍ମକୁ ପ୍ରବେଶ ଓ ପ୍ଲାଟପର୍ମର ଦୃଶ୍ୟ)

ବୁଢା : ବାବୁ ଗାଡିଟା ଇଆଡୁ ଆସିବନା ସିଆଡୁ ଆସିବ ।

ଷ୍ଟେସନ୍ ଇଆଡୁ... ।

ଭିକାରୀ ବାବୁ ଆଲ୍ଲାକି ନାମପର ଏକ ରୁପିୟା ଦେଇଦେ ।

(ଟ୍ରେନ ଆସିଲା, ବୁଢାକୁ ନେଇ ଟ୍ରେନ ଚାଲିଗଲା । ଟ୍ରେନ ଭୁବନେଶ୍ୱରରେ ପହଞ୍ଚିବା ପରେ)

(ଏଠାରେ ଅଭିନେତାମାନଙ୍କର BODY MOVEMENT ରେ ଟ୍ରେନ କରିବାକୁ ପଡିବ ଓ ସାଉଣ୍ଡ ଦେଇ ଟ୍ରେନ୍ ଆସିବା, ରହିବା ଓ ବୁଢାକୁ ଘେନି ଚାଲିଯିବା ଦେଖେଇବାକୁ ପଡିବ)

ବୁଢା ବାବୁ, ଏଇଟା ଭୁବନେଶ୍ୱର...

(ବୁଢା ଟ୍ରେନ୍‌ରୁ ଓହ୍ଲେଇଲା, ଟ୍ରେନ ଚାଲିଗଲା)

ବୁଢା ଷ୍ଟେସନ୍ ବାହାରକୁ ଗଲା ଓ ଟି.ଟି.ସି ସହିତ କଥାବାର୍ତ୍ତା

(ପ୍ଲାଟଫର୍ମର ଦୃଶ୍ୟ- ଭୁବନେଶ୍ୱର ପ୍ଲାଟଫର୍ମ)

ଟିଟିସି. : ଟିକଟ...

(ବୁଢା ଟିକଟ ଦେଲା ଏବଂ ପକେଟରୁ ଏକ ଠିକଣା କାଢି ଦେଖେଇଲା)

ବୁଢା ବାବୁ... ଏଇଟା କୋଉଁଠି ପଡିବ ?

ଟି.ଟି.ସି : ଏଇଠୁ ସିଧା ଆଗକୁ ଯିବ । ପ୍ରଥମେ ଇନ୍ଦିରା ଗାନ୍ଧୀ ପାର୍କ, ତାପରେ ଆସେମ୍ବଲି ହାଉସ୍, ସେଇଠୁ ଡାହାଣକୁ ଗଲେ ରବୀନ୍ଦ୍ର ମଣ୍ଡପ, ତାପରେ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ, ତାପରେ କାହାକୁ ଘର ଠିକଣାଟା ପଚାରିଦବ, ପାଇଯିବ ।

(ବୁଢା ପୁଣି MIME ରେ ଚାଲିବାକୁ ଆରମ୍ଭ କଲା ଏବଂ ବର୍ଣ୍ଣନା କରାଯାଇଥିବା ସମସ୍ତ ଦୃଶ୍ୟ ଯଥା : ଆଗେ ଇନ୍ଦିରା ଗାନ୍ଧୀ ପାର୍କ ଦେଖାଗଲା । ବୁଢା ଟିକିଏ ଅଟକିଗଲା) (ଇନ୍ଦିରା ଗାନ୍ଧୀ ପାର୍କର ଦୃଶ୍ୟ)

(ଇନ୍ଦିରା ଗାନ୍ଧୀଙ୍କ ପ୍ରତିମୂର୍ତ୍ତିରେ ଫୁଲମାଳ ଦେଇ ନେତା ବକ୍ତୃତା ଦେଲେ

ନେତା : ବନ୍ଧୁଗଣ.. ଆଜି ଇନ୍ଦିରାଗାନ୍ଧୀଙ୍କର ପୁଣ୍ୟ ଜନ୍ମତିଥିରେ ଆସ ଆମେ ଶପଥ ନେବା...(ଇକୋ : ଶପଥ ନେବା.. ଶପଥ ନେବା...)

ଆମେ ନାରୀ ଜାତି ପ୍ରତି ସମ୍ମାନ ଦେଖେଇବା, ସେମାନେ ଆମର ମା', ଜନନୀ, ଜାତିର ଜନନୀ, ସ୍ରଷ୍ଟା, ସେମାନେ ଆମର ପୂଜ୍ୟା, ନମସ୍ୟା । ମାତୃଭୂମି ଭଳି ମା' ଆମର ମହାନ୍, ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ । (ତାଳି) ବନ୍ଦେମାତରମ୍ । (ତାଳି)

(ଆସେମ୍ବ୍ଲି ଦୃଶ୍ୟ)

(ଏ ଦୃଶ୍ୟରେ ନେତାମାନେ ଦୁଇ ଭାଗରେ ବିଭକ୍ତ । ଶାସକ ଦଳ, ବିରୋଧୀ ଦଳ)

ଶାସକ ଦଳ ଆମେ ଶାସକ ଦଳ । ଆମେ କରାଖାନା କରିବୁ...

ବିରୋଧି ଦଳ : ଆମେ ବିରୋଧି ଦଳ । ଆମେ ପ୍ରତିରୋଧ କରିବୁ...

ଶାସକ ଦଳ ଆମେ ରାସ୍ତା କରିବୁ

ବିରୋଧି ଦଳ : ଆମେ ତାକୁ ବନ୍ଦ କରିବୁ....

ଶାସକ ଦଳ ଆମେ କୂଅ ଖୋଳିବୁ....

ବିରୋଧି ଦଳ : ଆମେ ବିରୋଧ କରିବୁ...

ଶାସକ ଦଳ ଆମେ ଯାହା ଚାହିଁବୁ ତାହା କରିବୁ...

ବିରୋଧି ଦଳ : ଆମେ ଧର୍ମଘଟ କରିବୁ, ଚକା ଜାମ କରିବୁ, ଓଡ଼ିଶା ବନ୍ଦ କରିବୁ ।

ଶାସକ ଦଳ ଆମେ ଗଢିବୁ...

ବିରୋଧି ଦଳ : ଆମେ ଭାଙ୍ଗିବୁ...

ଶାସକ ଦଳ : ଶାସକ ଦଳ ଜିନ୍ଦାବାଦ୍... ଜିନ୍ଦାବାଦ..

ବିରୋଧି ଦଳ : ମୁର୍ଦାବାଦ... ମୁର୍ଦାବାଦ....

(ଜିନ୍ଦାବାଦ୍, ମୁର୍ଦବାଦ୍ ଭିତରେ ଚେୟାର ଭଙ୍ଗା, ଚେକା ପକେଇବା ଓ ମାଇକ୍ ଭାଙ୍ଗିବା ଚାଲିବା ଓ ଦୃଶ୍ୟର ପରିସମାପ୍ତି)

(ବୁଢ଼ା ଚାଲିଛି, ସଙ୍ଗୀତ ମହାବିଦ୍ୟାଳୟର ଦୃଶ୍ୟ । କ୍ଲାସିକାଲ ଗୀତ ଚାଲିଛି, କିମ୍ବା ତାର SATIRE କରାଯାଇପାରେ ତା'ପରେ ମଧୁସୂଦନ ନଗର)

ବୁଢ଼ା : ବାବୁ ଦେଖିଲେ ଏଇ ଘର ନମ୍ବରଟା କେଉଁଠି ପଡିବ...

ଭଦ୍ରଲୋକ ଏଇ ଆଗରେ.. ଡାହାଣକୁ ଯାଇ ବାଁକୁ ବୁଲି ପଡିବ ସେଇଠି ଗୋଟାଏ ପାନ ଦୋକାନ ଅଛି, ସେଇ ପାଖାପାଖି ଘର । ଦୋକାନୀକୁ ପଚାରିଲେ କହିଦେବ ।

ବୁଢ଼ା : ହଉ ବୁଢ଼ାଟିଏ ହେଇଥା ।

(ବୁଢ଼ା ଚାଲିଗଲା)

## ତୃତୀୟ ଦୃଶ୍ୟ

(ମିନ୍‌ର ଘର । ଝରକା ଦେଇ ମିନୁ ବାହାରକୁ ଅନଇଁଛି । ବାହାରେ ବଲ୍ ଖେଳ ଚାଲିଛି । ପ୍ରବେଶ କଲା ବୁଢ଼ା)

ବୁଢ଼ା : (ଝରକା ପାଖରେ ଠିଆ ହୋଇ) କ'ଣ ଦେଖୁଛୁ ମା'.... ।

ମିନୁ : ଜୁହାର ଅଜା । କେତେବେଳେ ଆସିଲ ?

ବୁଢ଼ା ସକାଳୁ ବାହାରିଲିଣି ଯେ, ଏଇନେ ପହଞ୍ଚିଲି । ଖେଳିବାକୁ ମନହଉଚି । ଖେଳିବୁ ? ମୁଁ ବଲ ଆଣିଦେବି ।

ମିନୁ : କେମିତି ଖେଳିବି ଅଜା ? ମୁଁ ପରା ଛୋଟୀ ? ମୁଁ ଏଠି ଖେଳ ଦେଖିବାକୁ ଠିଆ ହେଇନି ଅଜା - ଏଇ ଶୁଣୁନ, ଝରକା ଆରପଟେ କ'ଣ ହେଉଛି, କାନ ଡେରି ଶୁଣିଲ ।

(ବୁଢ଼ା କାନ ଡେରି ଶୁଣିଲା, ପଛପଟରୁ ଶବ୍ଦ ଭାସି ଆସିଲା, ଦୃଶ୍ୟ ବଦଳିଗଲା) (କୋରସ୍‌ରେ

କୋରସ : ଚକ, ଅଖ, କଳ, ରବର (ଇତ୍ୟାଦି ଶୁଭୁଛି)

ବୁଢ଼ା : ପାଠ ପଢ଼ିବୁ ମା'.... ?

ମିନୁ : ପଢ଼ିବାକୁ ତ ଭାରି ଇଚ୍ଛା । ହେଲେ ପଢ଼ିବି କେମିତି ?

ମା : (ଭିତରୁ) ମଦନ ଖାଇବୁ ଆ ।

ବୁଢ଼ା : ମା' ଡାକିଲେଣି । ମୁଁ ଆସେ । (ପ୍ରସ୍ଥାନ)

(ପୁଣି ପାଠ ପଢ଼ା ଶବ୍ଦ ଭାସି ଆସିଲା ଓ ମିନୁ ସେଥିରେ ହଜିଗଲା । ବାପାର ପ୍ରବେଶ । ଝରକା କଡକୁ ଆସି ସବୁ ଦେଖିଲେ ଓ ଶୁଣିଲେ)

ବାପା : କ'ଣ କରୁଛୁ ? ଝରକା ଖୋଲିଲା କିଏ ?

(ଝରକା ବନ୍ଦ କରିଦେଲେ ଓ ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

(ଝିଅର ମା' ଚଉରା ମୂଳକୁ ସଞ୍ଜ ଦେଇ ଯାଉଛି, ମିନୁ ଭିତରୁ ଗାଉଛି)

ଗୀତ : ଦୀପଂ ଜ୍ୟୋତି ପରଂବ୍ରହ୍ମ
ଦୀପଂ ଜ୍ୟୋତି ଜନାର୍ଦ୍ଦନ
ଦୀପଂ ଜ୍ୟୋତି ହରତେ ପାପଂ
ସନ୍ଧ୍ୟା ଦୀପଂ ନମୋସ୍ତୁତେ ।
ଗୁରୁବ୍ରହ୍ମା ଗୁରୁବିଷ୍ଣୁ

ମିନୁ : ନାଇଁ ନାଇଁସାର୍ ଆପଣ ଏଠିକି ଆସିବେନି । ଆପଣଙ୍କୁ ବାପା ମା' ଦୁହେଁ ଅପମାନ କରିବେ । କ'ଣ ନାଇଁ କ'ଣ କହିବେ । ସେମାନେ ଋହାନ୍ତିନି ଯେ, ମୁଁ ପାଠ ପଢେ ।

ସାର : କାହିଁକି ? ସେମାନ କ'ଣ ମୁର୍ଖ ? ମୁଁ ସେମାନଙ୍କୁ ବୁଝେଇ ଦେବି ।

ବୁଢା : କିଛି ଲାଭ ହେବ ନାହିଁ ମାଷ୍ଟ୍ରେ । ଆପଣ ମୁର୍ଖକୁ ସିନା ବୁଝେଇ ଦେଇ ପାରିବେ, ହେଲେ ମୁର୍ଖ ପଣ୍ଡିତକୁ ବୁଝେଇ ପାରିବେନି ।

ସାର : ଆଛା ମଉସା ତୁମେ ପାଠ ପଢିଛ ?

ବୁଢା : ହଁ.. ଅ..ଆ... କ...ଖ... ଯାଏ ପଢିଛି । ସ୍କୁଲରେ ମାଷ୍ଟ୍ରେ ବେତରେ ବାଡେଇଲେ ଯେ, ସେଇ ଦିନଠୁଁ ଲୁଚିଲି । ମୁଁ ପଢିଥିଲେ ଆପଣଙ୍କୁ ଡାକିଥାନ୍ତି କାହିଁକି ? ମୋ' ଦାଢି ପାଚିଗଲାଣି, ମୁଁ ପଢେଇ ଦେଇ ନଥାନ୍ତି ?

ସାର : ଠିକ୍ ଅଛି, ସମୟ ସୁବିଧା ଦେଖି ଏଇ ଝରକା ଆରପଟେ ଥାଇ ମୁଁ ପାଠ ପଢେଇ ଦେବି । ବୁଝିଲୁ ମା'.. ଈଶ୍ୱର ଚନ୍ଦ୍ର ବିଦ୍ୟା ସାଗର, ଲାଲ ବାହାଦୁର ଶାସ୍ତ୍ରୀ, ଆମ୍ବେଦକର ଆଦି ବିଖ୍ୟାତ ପଣ୍ଡିତମାନେ ମଧ୍ୟ ଏମିତି ଉଦ୍ୟମ, ଦୃଢତା ଓ ଜିଜ୍ଞସା ରଖି ପାଠ ପଢି ମଣିଷ ହେଇଛନ୍ତି । ମୋର ବିଶ୍ୱାସ ତୁ' ବି ଦିନେ ବଡ ହେବୁ ।

ମିନୁ : ହେଲେ ମୁଁ ଯେ ପଙ୍ଗୁ ।

ସାର : ଗୋଡ ତୋର ପଙ୍ଗୁ ହେଲେ କ'ଣ ହେବ । ତୋ' ମନର ଜିଜ୍ଞାସା, ତୋ' ଚିନ୍ତା ଶକ୍ତିତ ପଙ୍ଗୁ ହେଇଯାଇନି । ତୁମେ ତାକୁ ସାହାଯ୍ୟ କର ମଉସା, ଦେଖିବ ସେ ଦିନେ ନା ଦିନେ ନିଜ ଗୋଡରେ ଛିଡା ହେଇ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେବ ।

ବୁଢା : ତମ କଥା ସତ ହେଉ ମାଷ୍ଟ୍ରେ । ମୁଁ ସିନା ତା'ର ନିଜ ବାପା ନୁହେଁ ହେଲେ ତା' ପାଇଁ କାହିଁକି କେଜାଣି ମୋ' ମନ ଭିତରଟା ସବୁବେଳେ କାନ୍ଦି ଉଠେ । ମୋର ଯଦି ଏମିତି ଝିଅଟିଏ ଥାଆନ୍ତା.....

ସାର : ଏଇ ତୁମର ଝିଅ । ଖାଲି ଜନ୍ମ ଦେଲେ କେହି ବାପା ହୋଇଯାଏନା ମଉସା । ପାଳି ପୋଷି ପିଲାକୁ ମଣିଷ କରିବାକୁ ହୁଏ । ମୋ' ମନ କହୁଛି ତମେ ନିଶ୍ଚୟ ପାରିବ । ମୁଁ ଆସୁଛି । କାଲିଠାରୁ ପାଠପଢା ଆରମ୍ଭ ।

(ସାରଙ୍କର ପ୍ରସ୍ଥାନ)

ଗୁରୁଦେବ ମହେଶ୍ୱର
ଗୁରୁରେବ ପରଂବ୍ରହ୍ମ
ତସ୍ମୈଶ୍ରୀ ଗୁରବେ ନମଃ ।
ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂଯେନ ଚରାଚରଂ
ତତ୍ପଦଂ ଦର୍ଶିତଂ ଯେନ
ତସ୍ମୈଶ୍ରୀ ଗୁରବେ ନମଃ ।
ଅଜ୍ଞାନ ତିମିରାଂ ଧସ୍ୟ
ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁର୍ନ୍ମିଳିତଂ ଯେନ
ତସ୍ମୈଶ୍ରୀ ଗୁରବେ ନମଃ ।

ବାପା : ବାହାରିଲଣି ନା ନାହିଁ ? ଶୀଘ୍ର ବାହର । ସିନେମା ବେଳ ହେଇଯାଉଛି । ଟିକେଟ ପୁଣି କାଟିବାକୁ ପଡିବ । ଜଲ୍ଦି ଚାଲ ।

ମା : ଏଇ ସଙ୍ଗେ ସଙ୍ଗେ ଯାଉଛି ।

(ଦୁହେଁ ବାହାରିଗଲେ)

ବୁଢା : (ମାଷ୍ଟରଙ୍କୁ ନେଇ ପ୍ରବେଶ) ସାର୍ ଏଇଠି ବସନ୍ତୁ । ମିନୁ... ମିନୁ.... (ମିନୁର ପ୍ରବେଶ) ଯାହାକଥା ଆପଣଙ୍କୁ କହୁନଥିଲି, ଇଏ ସେଇ ମିନୁ । ତିନି ଚାରି ବର୍ଷର ହୋଇଥିଲା, ପୋଲିଓରେ ତାର ପାଦ ଅଚଳ ହୋଇଗଲା । ପାଠ ପଢିବାକୁ ତାରଭାରି ଇଛା ହେଲେ ବାପା ମା'ଚାହାନ୍ତିନି ସେ ସ୍କୁଲକୁ ଯାଉ, ପାଠ ପଢୁ । ମୋର କିନ୍ତୁ ଇଛା ସେ ପଢୁ ବହୁତ ପଢୁ ।

ସାର : ମୁଁ ବୁଝିପାରୁଛି ତୁମ ମନର କଥା, ତା' ମନର କଥା । ସବୁଦିନ ଝରକା ଭିତରୁ ଏଇ କଅଁଳିଆ ମୁହଁଟି ଦେଖି ଦେଖି ମୁଁ ଅନେକ କଥା ଭାବେ । ବୁଝିଲନା ମଉସା ଆମ କାମ ହେଲା ପାଠର ବିହନ ବୁଣିବା । ଘରେ ଘରେ ଜ୍ଞାନର ପ୍ରଦୀପ ଜାଳିବା । ଏମିତି ପିଲାକୁ ପାଠ ନ ପଢେଇଲେ, ମୋ ମାଷ୍ଟର ଜୀବନ ଧିକ ହୋଇଯିବ । ନର୍କରେ ପଡିବ । ମୁଁ ତାକୁ ନିଶ୍ଚୟ ପଢେଇବି ।

ମିନୁ : ହେଲେ କେମିତି ପଢେଇବେ ସାର୍ ମୁଁ ତ ଆପଣଙ୍କ ପାଖକୁ ଯାଇପାରିବିନି ?

ସାର : ତମର ଯିବା ଦରକାର ନାହିଁ । ସ୍କୁଲ ସାରି ମୁଁ ଏଠିକି ଆସିବି, ତୁମକୁ ପାଠ ପଢେଇ ସାରି ଘରକୁ ଯିବି ।

ବୁଢା : କାଲିଠାରୁ ପାଠ ପଢା ଆରମ୍ଭ ହବ । ଆ... ମା'.. ମୁଁ ତତେ ପରୀ ରାଇଜର କାହାଣୀ ଶୁଣେଇବି ।

ମିନୁ : ହେଲେ ଅଜା.....

ବୁଢା : ଆଜି ଠାରୁ ମୁଁ ତୋର ସବୁ ଦାୟିତ୍ୱ ନେବି । ପାଠ ପଢା, ଖେଳାଖେଳି, ହସଖୁସି....

ମିନୁ : କିନ୍ତୁ କେମିତି ? ବାପା, ବୋଉ ସେମାନେ ଜାଣିଲେ ତୁମକୁ ବାହର କରିଦେବେ, ଗାଁକୁ ପଠେଇ ଦେବେ.....

ବୁଢା : ସେମାନେ ଜାଣିବେ କେମିତି ? ବାପା ତ ତୋ'ର ଅଫିସ୍ ପଳେଇବ । ମା' ତ ତୋର ଫେସନ ଫାସନ ହୋଇ ପଳେଇବ ସମାଜ ସେବା କରିବାକୁ, ତା'ପରେ ଆମର ପାଠ ପଢା ଆରମ୍ଭ ହବ । ସେମାନେ ଘରକୁ ଫେରିବା ଆଗରୁ ସବୁ ସରିଯାଇଥିବ । ସେମାନେ ଜାଣିବେ କେମିତି ? (ବାହାରୁ କଲିଂ ବେଲ୍ ଶବ୍ଦ)

ହେଇ ତୋ ବାପା ଆସିଲେଣି ।

ବାପା : ମଦନ.. ମଦନ... କବାଟ ଖୋଲ.....

ବୁଢା : ଆସିଲି.... (ପ୍ରସ୍ଥାନ)

ବାପା : କ'ଣ କରୁଥିଲୁ ?

ବୁଢା : ରୋଷେଇବାସ ସାରି ଦେଇ ଦୁହେଁ ବସି ଗପସପ ହେଉଥିଲୁ ।

ମା : ଶୀଘ୍ର ଖାଇବାକୁ ବାଢ.....

ବାପା : ତୁ ଏଯାଏଁ ଶୋଇନୁ....

ମିନୁ : ଶୋଇଚିତ.....

ବୁଢା : (ଭିତରୁ) ମା' ... ଖାଇବା ଟେବୁଲରେ .. ଖାଇବା ଥଣ୍ଡା ହେଉଛି, ଶୀଘ୍ର ଆସ ।

(ଝିଅ ପାଇଁ ଖାଇବା ନେଇ ମଦନ ଆସୁଛି)

ମା : ମଦନ ସେ କଣ ? କୁଆଡେ ନଉଛୁ ?

ବୁଢା : ଝିଅ ପାଇଁ ନେଉଛି ତା ରାତି ଖାଇବା ।

ମା : ସିଏ ଖାଇବନି....

ବୁଢା : କାହିଁକି ?

ବାପା : ଏତେ କଥା ପଚ଼ରିବା କ'ଣ ଦରକାର । ରାତିରେ ସେ ଖାଏନା...

ବୁଢା : ତାକୁ ଭୋକ ହବନି... ?

ବାପା : ତାକୁ ଭୋକ ହବକି ନହବ, ସେ କଥା ତୋ ଅପେକ୍ଷା ଆମକୁ ବେଶୀ ଜଣା । ପଚାରୁନୁ ତାକୁ ।

ମିନୁ : ନା, ଅଜା, ମୁଁ ଖାଇବିନି । ମତେ ଭୋକ ନାହିଁ ।
(ସମସ୍ତଙ୍କର ପ୍ରସ୍ଥାନ ଝିଅ କାନ୍ଦିଛି)

ମା : ଆମେ ଶୋଇବାକୁ ଯାଉଛୁ ତୁ ଖାଇ ପିଇ ଶୋଇ ପଡିବୁ ଯା...

ବୁଢା : ହଁ... ମା'

(ଲୁଚି ଲୁଚି ବୁଢା ଖାଇବା ଆଣିଛି)

ମା' .... ନେ... ଦି'ଖଣ୍ଡ ରୁଟି ଖାଇଦେ...

ମିନୁ : ମୁଁ ଖାଇବିନି ମତେ ଭୋକ ନାହିଁ ।

ବୁଢା : ତୁ' ମିଛ କହୁଛୁ । ମୋ' ମୁଣ୍ଡରେ ହାତ ଦେଇ କହ, ତୁ' କାହିଁକି ଖାଇବୁନି.. ?

ମିନୁ : ଏବେ ଖାଇଲେ ରାତିରେ କାଳେ ପରିସ୍ରା ଲାଗିବ, ଝାଡା ଲାଗିବ, ମୋତେ ଉଠେଇନବ କିଏ ? ମୋତେ କଷ୍ଟ ହବ । ମୋ' ପାଇଁ ସମସ୍ତଙ୍କ ନିଦ ଭାଙ୍ଗିବ । ସମସ୍ତେ କଷ୍ଟ ପାଇବେ । ସେଥିପାଇଁ ମୋତେ ରାତି ଖାଇବା ମନା କରାଯାଇଛି । ଆଉ ମୁଁ ବି ତାକୁ ମାନି ନେଇଛି । ମୋତେ ତମେ ବାଧ୍ୟ କରନି ଅଜା- ରାତିରେ ଓପାସ ରହିବା ମୋର ଅଭ୍ୟାସରେ ପଡି ଯାଇଛି ।

ବୁଢା : ନିଜର ବାପା.... ମା'.. ହେଇ...

ମିନୁ : ସେମାନଙ୍କର କିଛି ଦୋଷ ନାହିଁ । ଅଜା ଦିନେ ଅଧେ ସିନା କିଏ କାହାକୁ ସାହାଯ୍ୟ କରିବ । ସବୁଦିନ କିଏ କାହାକୁ କାହିଁକି ସାହାଯ୍ୟ କରିବ ଅଜା । ଆଉ ସାରା ଜୀବନ କାହାର ଦୟାକୁ ଚାହିଁ ମୁଁ ବଞ୍ଚି ରହିବାକୁ ଚାହେଁନି ଅଜା । ତା' ଅପେକ୍ଷା ଓପାସରେ ରହି ମରିଯିବା ଭଲ ।

ବୁଢା : ଦୟା ନୁହେଁ ଝିଅ । ଏଇଟା ତାଙ୍କର କର୍ତ୍ତବ୍ୟ । ସେମାନେ ପରା ବାପା... ମା'... । ଚଢେଇଟିଏ ବି ତାର ଛୁଆ ଲାଗି ଆହାର ଆଣି ଦେଇଥାଏ, ଆଉ ଏମାନେ ତ ମଣିଷ । ଠିକ୍ ଅଛି ଆଜି ଠାରୁ ମୁଁ ସେ ସବୁ କରିବି । ତୁ ଖାଇଦେ.... ମା ତୋତେ ମୁଁ ଚାଲି ଶିଖେଇବି, ପାଠ ପଢେଇବି, ମଣିଷ କରେଇବି । ଦିନରେ ପାଠ ପଢିବୁ, ଆଉ ରାତିରେ ଚାଲି ଶିଖିବୁ ।

(ମଦନା ଝିଅକୁ ଖୁଆଇ ଦେଇଛି । ବାଡି ଆଣିବାକୁ ଯାଇଛି । ବାଡି ଆଣି ତାକୁ

ଚାଲିବା ଶିଖେଇଛି । ରାତି ପାହି ଆସୁଛି)

ନେପଥ୍ୟରୁ ଗୀତ :

ଦିନପରେ ରାତି ରାତି ପରେ ଦିନ
ବର୍ଷ ପରେ ବର୍ଷ ବିତେ
ସାଧନାରେ ରତ କର୍ମର ସାଧିକା
କର୍ମ କରେ ପ୍ରାଣପାତେ ।
କର୍ମଣ୍ୟେ ବାଧିକାରସ୍ତେ ମା' ଫଳେଷୁ କଦାଚନ ।
ଯତ୍ର ଯୋଗେଶ୍ୱର କୃଷ୍ଣ ଯତ୍ର ପାର୍ଥ ଧନୁର୍ଦ୍ଧର
ତତ୍ର ଶ୍ରୀ ବିଜୟଭୂତ
ଧ୍ରୁବାନୀତି ମତିର୍ମମ ।

(ଗୀତ ଭିତରେ ଝରକା ଆରପଟେ ସାର । ଝରକା ଏପଟେ ମିନୁ । ବୁଢ଼ା ଚା, ଜଳଖିଆ, ପାଣି, ଯୋଗେଇ ଦଉଚି । ଝିଅ ଚାଲିବା ଶିଖି ଯାଇଛି)
(ବାପା, ମା ବାହାରକୁ ବାହାରି ଯାଇଛନ୍ତି)

ବାପା : ମଦନ.. ମଦନ... କବାଟ ଦେ..ଆମେ ହସ୍‌ପିଟାଲ ଯାଉଛୁ । ଫେରିବାକୁ ଡେରିହେବ

(ବୁଢ଼ା କବାଟ ବନ୍ଦ କରି ଆସିଛି)

ମିନୁ : ବାପା... ବୋଉ ତ ହସ୍ପିଟାଲ ଗଲେ । ଚାଲ ଅଜା, ଆମେ ଟିକିଏ ସ୍କୁଲ ଆଡେ ବୁଲି ଆସିବା ।

ବୁଢ଼ା : ଚାଲ ମା'... ଚାଲ...

## ପଞ୍ଚମ ଦୃଶ୍ୟ

ସାର : ରୂପ ଯୌବନ ସମ୍ପନ୍ନା, ବିଶାଳ କୁଳ ସମ୍ଭବା, ବିଦ୍ୟାହୀନଂ ନଶୋଭନ୍ତେ, ନିର୍ଗନ୍ଧା ଇବ କିଂଶୁକା ।

(ଶ୍ଳୋକଟିକୁ ବୁଝଉଛନ୍ତି)

ଯେମିତିକି :
ସ୍ୱଦେଶେ ପୂଜ୍ୟତେ ରାଜା ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ ।

ସାର : ଆରେ ମା' କୁଆଡେ ଆସିଲୁ ?

ମିନୁ : ମେଟ୍ରିକ ରେଜଲ୍ଟ ଆଜି ବାହାରିବାର ଥିଲା, ବୁଝିବାକୁ ଆସିଥିଲି ।

ସାର : ଆରେ ରେଜଲ୍ଟ ପରା ବାହାରି ସାରିଲାଣି । ମୁଁ ବୁକ୍‌ଲେଟ୍ ଆଣିବା ପାଇଁ ପିଅନକୁ ପଠେଇଛି । ଆସିଲେ ତତେ ଖବର ଦେବି..

ହେଲା... ?

ବୁଢା : ଶୀଘ୍ର ଖବର ଦେବେ ମାଷ୍ଟ୍ରେ । ଝିଅର ପରୀକ୍ଷା ଫଳ ଜାଣିବାକୁ ପରା ମନ ଉଚ୍ଚାଟ ହେଲାଣି । କହିଲି ମୁଁ ଯାଉଚି ମାଷ୍ଟ୍ରେଙ୍କ ଠାରୁ ବୁଝି ଆସିବି, ଶୁଣିଲାନି । ତାର ଏକା ଜିଦ୍ ଆସିବ ? ଟିକିଏ ଶୀଘ୍ର ଖବର ପଠେଇଦେବେ ମାଷ୍ଟ୍ରେ ।

ସାର : ମୁଁ ଖବର ପାଇଲେ, ଆଗେ ତମ ଘରକୁ ଯିବି ।

ବୁଢା : ଏଥର ଚାଲ୍ ମା' ... କାଳେ ବାବୁ ଆସିଯିବେ ।

(ଦୁହେଁ ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

(ବାପା, ମା' ହସ୍ପିଟାଲରୁ ଫେରିଲେ)

ବାପା : ମଦନ.. ମଦନ. କବାଟ ଖୋଲ ।

ବୁଢା : ଯାଉଛି ବାବୁ । (ମଦନ କବାଟ ଖୋଲିଛି) ମା'ଙ୍କର କ'ଣ ହେଲା ? ମା'ଙ୍କର ଦେହ ଅସୁସ୍ଥ ?

(ବାବୁ ଶୁଆଇ ଦେଇ,ପ୍ରେସ୍କ୍ରିପ୍ସନ୍, ଔଷଧ ଥୋଇଛନ୍ତି)

ବାପା : ସେ କଥା ଜାଣି ତୋର କିଛି ଲାଭ ନାହିଁ । ଯା' ପାଣି ଆଣ । (ମଦନ ପାଣି ଆଣିଛି) ନିଅ, ଔଷଧଟା ଖାଇନିଅ । (ଔଷଧ ଖୁଏଇଛନ୍ତି) ମୁଁ ଅଫିସ୍ ଯାଉଛି । ଦରକାର ପଡିଲେ ଫୋନ୍ କରିବ ।

ମା : ଯାଆ .. ତୁ ବିଶ୍ରାମ ନବୁ ଯା'...
(ମଦନା ଚାଲିଗଲା । ମାଆ ଶୋଇଲେ । ଝିଅ ପ୍ରବେଶ କରି ପ୍ରେସ୍କ୍ରିପସନ୍ ପଢିଛି । ଔଷଧ ଦେଖୁଛି । ମା'ର ମୁଣ୍ଡରେ ଓ ଦେହରେ ହାତ ବୁଲେଇଛି । ମା'ର ନିଦ ଭାଙ୍ଗି ଯାଇଛି)
ତୁ ... ଏଠିକି ଆସିଲୁ କେମିତି ?

ମିନୁ : ଏବେ ମୁଁ ନିଜ ପାଦରେ ଚାଲି ପାରୁଚି ମା ।

ମା : ତତେ ଚାଲି ଶିଖେଇଲା କିଏ ?

ମିନୁ : ହାତ ଧରି ଯିଏ ଚାଲି ଶିଖାଏ, ତାକୁ କ'ଣ କହନ୍ତି ତୁ କ'ଣ ଜାଣିନୁ ମା' ?

ମା : ସେ କିଏ... ? ମଦନ .. ମଦନ.....

ମିନୁ : ସେ କଥା ଥାଉ । ସତ କଥା କହ, ତୋ ଦେହ ଖରାପ କାହିଁକି ହେଇଛି ? ଗଲା ବେଳେ ତ ଠିକ୍ ଥିଲୁ । ଘଣ୍ଟାଏ ଭିତରେ ଦେହ

ଏମିତି କ'ଣ ଖରାପ ହେଇଗଲା ଯେ ?

ମା : ସେ କଥା ଜାଣି ତୋର ଲାଭ ?

ମିନୁ : ତୋ' ପ୍ରେସ୍କ୍ରିପ୍ସନ୍ ଉପରେ, ତୋ ରୋଗର ନାଁ ମଧ୍ୟ ଡାକ୍ତର ଲେଖିଦେଇଛନ୍ତି ମା... ତୁ ଆଉ ମତେ ଲୁଚେଇ ପାରିବୁନି । କାରଣ ମୁଁ ପାଠ ପଢି ପାରୁଛି ।

ମା : ମିନୁ (ରାଗରେ)

ମିନୁ : ମୁଁ ଏବେ ଓଡିଆ,ଇଂରାଜୀ ପଢି ପାରୁଛି । ତୋ' ଭଳିଆ ଶିକ୍ଷିତା ମା' ମାନେ ଯଦି ଝିଅମାନଙ୍କୁ ଜନ୍ମଦେବା ଆଗରୁ ଏମିତି ପେଟଭିତରେ ମାରି ଦିଅନ୍ତି.... ତା' ହେଲେ ଏ ପୃଥିବୀ ଦିନେ ମାତୃଶୂନ୍ୟ ହେଇଯିବ ମା' । ଆଉ ଏ ସୃଷ୍ଟି, ଏକ ବନ୍ଧ୍ୟା ସୃଷ୍ଟିରେ ପରିଣତ ହେବ । ତୁ ପରା ବି.ଏ. ପାଶ୍ କରିଛୁ ମା'... । ବାପା, ପୁଣି ଜଜ୍ ହେଇଛନ୍ତି । ତମେମାନେ ଯଦି ନିଜର ସୃଷ୍ଟିକୁ ଜଜ୍‌ମେଣ୍ଟ ଦେଇ ପାରୁନ ଅନ୍ୟକୁ ଭଲ ପାଇବ କେମିତି ? ମତେ ତମେ ଘୃଣା କର, କାରଣ ମୁଁ ଝିଅ, ମୁଁ ବିକଳାଙ୍ଗ । ସେଥିପାଇଁ ଦାୟୀ ମୁଁ ନୁହେଁ, ତୁମେମାନେ । ଝିଅ ବୋଲିଅବହେଳା କରି ମୋର ଠିକ୍ ଯତ୍ନ ନେଇନ । ଠିକ୍ ସମୟରେ ପୋଲିଓ ବୁନ୍ଦାଏ ଖୁଆଇନ, ସେଇଥିପାଇଁ ଆଜି ମୁଁ ବିକଳାଙ୍ଗ । ଆଉ ସେଥିପାଇଁ ଦାୟୀ ମୁଁ ନା ତମେମାନେ । ବିକଳାଙ୍ଗ ମୁଁ ନୁହେଁ ମା' ବିକଳାଙ୍ଗ ତମେ, ତମର ମାନସିକତା, ତମର ଶିକ୍ଷା, ତମର ବିଚାର ଆଉ ତମର ଅହଂକାର ।

ମା : ମିନୁ... (ବାଡେଇଚି ଏବଂ ମିନୁ ପଡିଯାଇଚି)

ସାର : (ପ୍ରବେଶ କରି) ବାଃ .. ବଢିଆ .... ବଢିଆ... କାହାକୁ ଉପଦେଶ ଦଉଛୁ ମା । ଏମାନଙ୍କୁ ଉପଦେଶ ଦେଲେ, ତତେ ଏମିତି ବଢିଆ ବଢିଆ ପୁରସ୍କାର ମିଳିବ । କଥାରେ କହିନ୍ତିନି, କିଏ ଦେଖିଲେ ଶିଖେ, କିଏ ପାଦ ହୁଡିଲେ ଶିଖେ । ଆଉ କିଛି ଲୋକ ଅଛନ୍ତି, ପାଦ ଝୁଣ୍ଟି ଝୁଣ୍ଟି ଆଣ୍ଠୁ ଗଣ୍ଠି ଖଣ୍ଡିଆ ହେଲେ ବି ଶିଖି ପାରିନ୍ତି ନାହିଁ । କାରଣ ସେମାନେ ଶିଖିବାକୁ ଚାହାନ୍ତି ନାହିଁ । ସେମାନେ ମୂଢ ମଣିଷ । ଛାଡ ସେସବୁ କଥା । ନେ, ମା .. ତୋ ପାଇଁ ଆଜି ବଢିଆ ଖବର ଆଣିଚି । ତୁ ମ୍ୟାଟ୍ରିକ୍ ପରୀକ୍ଷାରେ ପାସ୍ କରିଯାଇଚୁ ।

ମିନୁ : ସତରେ ସାର୍ ।

ସାର : ଏଇ ଦେଖ୍ ତୋ ରୋଲ ନଂ ।

ମା : କ'ଣ କହିଲ ? ମିନୁ ମ୍ୟାଟ୍ରିକ୍ ପରୀକ୍ଷାରେ ପାସ୍ କରିଛି ? କେମିତି ?

ସାର : ଦୃଢ ଇଛା ଥିଲେ ଆଉ ଆଗ୍ରହ ଥିଲେ ମଣିଷ ସବୁ କରିପାରେ ।

ମା : ହେଲେ ତାକୁ ପାଠ ପଢ଼େଇଲାକିଏ ?

ସାର : ଏକଥା ସମସ୍ତେ ଜାଣନ୍ତି ଯେ, ଗୋଟିଏ ପରିବାରର ମା' ଶିକ୍ଷିତା ହେଲେ, ସେ ପରିବାର ଆପେ ଆପେ ଶିକ୍ଷିତ ହେଇଯାଏ । କାରଣ Mother is the first teacher of the child. ମାତ୍ର ମା' ଶିକ୍ଷିତା ହବା ସାଙ୍ଗକୁ ବୁଦ୍ଧିମତୀ, ସହନଶୀଳ ଆଉ ଦୂରଦୃଷ୍ଟି ସମ୍ପନ୍ନା ହବା ଦରକାର ।

ମା : କିନ୍ତୁ ତା' ବାପା ଜାଣିଲେ, ତାର ଅବସ୍ଥା କ'ଣ ହେବ ଜାଣନ୍ତି ?

ମିନୁ : ବର୍ତ୍ତମାନ ଏ ଘରେ ମୋ' ଅବସ୍ଥା ଯାହା, ତା'ଠାରୁ ଖରାପ ଅବସ୍ଥା ଆଉ ପୃଥିବୀରେ କେଉଁଠି ନଥିବ ମା'? ଆପଣ ଚିନ୍ତା କରନ୍ତୁ ନାହିଁ ସାର୍ । ଏଣିକି ଯେତେ ବାଧାବିଘ୍ନ ଆସୁପଛେ, ମୁଁ ନୀରବରେ ରହିବି ନାହିଁ । ସ୍ୱୟଂସମ୍ପନ୍ନା ହବାର ବ୍ରତ ଗ୍ରହଣ କରିଛି ଯେତେବେଳେ ଏଥର ମୁଁ Computer ଶିଖିବି । ଦରକାର ପଡିଲେ ନିଜେ ରୋଜଗାର କରି ପାଠ ପଢିବି ।

ସାର : ଆପଣଙ୍କୁ ମୋର ଅନୁରୋଧ, ଆପଣ ଝିଅକୁ ସାହଯ୍ୟ କରନ୍ତୁ ବା ନକରନ୍ତୁ ତାକୁ ଅନ୍ତତଃ ହତୋତ୍ସାହିତ କରନ୍ତୁନି ।

## ସପ୍ତମ ଦୃଶ୍ୟ

ଗୀତ : ଟରେ ଟକା ଟରେ ଟକା
ଟରେ ଟକା ଟକ୍ ଟକ୍.... (୪ ଥର)
(ଗୋଟେ Computerରେ ଝିଅଟି ବସି ଟାଇପ୍ କରିଚି)
Dear Sir,

..............................

Yours faithfully.

ବାପା : ଏବେ ଏ ଚିଠି କଉଁଠୁ ଆସିଲା ... ୟାକୁ କିଏ ଲେଖିଛି ?

ମିନୁ : ମୁଁ ଲେଖିଛି ବାପା ।

ବାପା : ତୁ' ? ଅସମ୍ଭବ ।

ମିନୁ : ତୁମେ ନଥିହେଁଲେ ବି ମୁଁ ଚାଲି ଶିଖିଛି, ପାଠ ପଢ଼ା ଶିଖିଛି, Computer ଶିଖିଛି ଟାଇପ୍ କରିବା ଶିଖିଚି । ନିଜ ଗୋଡରେ ନିଜେ ଛିଡ଼ା ହବା ଶିଖିଚି ।

ବାପା : ତୋର ଆସ୍ପର୍ଦ୍ଧା ତ କମ୍ ନୁହେଁ ଦେଖୁଛି । ତୋର ଆଉ ଏ ଘରେ ସ୍ଥାନ ନାହିଁ । ତୋତେ ହଷ୍ଟେଲକୁ ପଠେଇ ଦଉଛି ରହିଥା ।

ବୁଢ଼ା : ହଷ୍ଟେଲ କାହିଁକି ପଠେଇବେ ବାବୁ । ମୋ ସାଙ୍ଗରେ ପଠେଇଦିଅ । ମୁଁ ତାକୁ ଗାଁକୁ ନେଇଯିବି ।

ବାପା : ତତେ ଏଠି ରଖି ମୁଁ ବହୁତ ଭୁଲ କରିଛି । Gate out, I say gate out.

ମିନୁ : ବାପା... ବାପା....

ବାପା : ତତେ ଏଇଲେ ନେଇ ଅନାଥ ଆଶ୍ରମରେ ଛାଡୁଛି ରହିଥା.... ଚାଲ... ଚାଲ...

## ଅଷ୍ଟମ ଦୃଶ୍ୟ

ଅନାଥ ଆଶ୍ରମର ଦୃଶ୍ୟ

(ଗୀତ ଗାଇ ଗାଇ ଘର ଝାଡୁ କରୁଛି ହରିଆ । ମଝିରେ ମଝିରେ ଅସରପା ମାରଛି । ଅସରପାକୁ ଗାଳି କରୁଛି । ବାହାରୁ ଆସିଛନ୍ତି ସୁପରିଣ୍ଟେଣ୍ଡେଡ୍, ମିନୁ ଓ ତାର ବାପ)

ସୁପରିଣ୍ଟେଣ୍ଡେଣ୍ଟ : ଆସନ୍ତୁ ଆଜ୍ଞା ଆସନ୍ତୁ । ଏଇଟା ଆମ ଶିଶୁ ବିକାଶ ନିକେତନ । ଏଠି ଆପଣଙ୍କର କିଛି ଅସୁବିଧା ହବନି ।

(IMPROVISIATION)

ଏଇଠି ଶିଶୁଙ୍କର ବିକାଶ ସଙ୍ଗେ ସଙ୍ଗେ ତାଙ୍କ ପାଇଁ ନାନା ପ୍ରକାର ଟ୍ରେନିଂର ବ୍ୟବସ୍ଥା କରାଯାଇଛି । ଏଇ ଦେଖୁନାହାଁନ୍ତି ଏଇ ୧ ନମ୍ବର ରୁମ୍‌ରେ ସିଲେଇ ମେସିନ ଅଛି । ଜାପାନ ଗର୍ଭର୍ଣ୍ଣମେଣ୍ଟରୁ ଏଡ ମିଳିଛି । ଏଇଠି ପିଲାମାନେ ସିଲେଇ ଶିଖନ୍ତି । ଆପଣ ପଚାରି ପାରନ୍ତି ତାଲା କାହିଁକି ପଡିଛି, ଚାବି ନାହିଁ । ଚାବିଟା କେୟାର ଟେକର ପାଖରେ ଅଛି । ସିଏ ଛୁଟିରେ ଅଛି । ଆଉ ୨ ନମ୍ବର ରୁମ୍‌ଟା କଣ୍ଢେଇ ତିଆରି କରାଖାନା । କୋରିଆ ଗଭର୍ଣ୍ଣମେଣ୍ଟରୁ ପଇସା ଆସିଛି, ପିଲା ଶିଖୁଛନ୍ତି । ଚାବିଟା କେୟାର ଟେକର ପାଖରେ ଅଛି । ଆଉ ଏଇ ୩ ନମ୍ବର

ଗୁମ୍‌ଟା ଆଚାର ତିଆରି କାରଖାନା । ମେସିନ୍ ସବୁ ଫ୍ରାନ୍ସ ସରକାର ଦେଇଛନ୍ତି । ଉବିଟା...

ମିନୁ : କେୟାର ଟେକର ପାଖରେ ଅଛି ।

ସୁପରିଣ୍ଟେଣ୍ଡେଣ୍ଟ : ସାର୍.... ଆମର ଏଇଟା ଗୋଟିଏ ଏନ୍.ଜି.ଓ. ସଂସ୍ଥା ଆଜ୍ଞା.. । ଇଣ୍ଟରନେସନାଲ ଲେଭେଲରେ ଆମେ କାମ କରୁଛୁ । ଆପଣଙ୍କର କିଛି ଚିନ୍ତା ନାହିଁ । ଝିଅ ଭଲ କାମ କରି ପାରିଲେ ଆମେ ତାକୁ ଯୁଆଡେ ପାରିବୁ ସିଆଡେ ଚାଲାଣ କରିଦେବୁ ।

ମିନୁ : କ'ଣ କରିବ ? ଚାଲାଣ ?

ସୁପରିଣ୍ଟେଣ୍ଡେଣ୍ଟ : ନା.. ମାନେ... ଫରେନ୍ ପଠେଇ ଦେବୁ । ଚାକିରି କରିବା ପାଇଁ । ସେଥିରେ ଆମର କିଛି ସ୍ୱାର୍ଥ ନାହିଁ । ଚାହିଁଲେ ଆପଣବି ବାପାଙ୍କୁ ସାଙ୍ଗରେ ନେଇ ପାରିବେ, ରହି ପାରିବେ ।

ବାପା : ନା... ମୁଁ ରହିବିନି, ଝିଅ ରହିବ ।

ସୁପରିଣ୍ଟେଣ୍ଡେଣ୍ଟ : ଝିଅ ? ନାଇଁ ମାନେ ଝିଅ ପୁଅର ସେମିତି କିଛି ବାଛ ବିଚାର ନାହିଁ । ତେବେ ଝିଅ ପିଲାତ... ଟିକିଏ ଅଲଗା ଭାବରେ ଇଣ୍ଟରେଷ୍ଟ ନେବାକୁ ପଡିବ । ଆପଣ ନ ଆସିଲେ ନାହିଁ । ମଝିରେ ମଝିରେ ଟିକିଏ ଟଙ୍କା ମାନେ ବୁଝୁନାହାନ୍ତି । ମାନେ... ପଠେଇଦେଲେ....

ବାପା : ମୋର ଏଠିକି ଆସିବାର ନାହିଁ । ଯାହା ଦରକାର ହବ, ଘରକୁ ଯାଇ ନେଇ ଆସିବ । (ଚାଲି ଯାଉଥିଲେ)

ମିନୁ : ବାପା, ବୋଉକୁ କହିବ- ମୋ' ଜନ୍ମ ଦିନରେତ କେବେ ମୋ' ପାଟିରେ ମିଠା ଗୋଟିଏ ଦେଇନି, ଆଜି ଦିନଟାକୁ ମୋ' ମୃତ୍ୟୁଦିନ ଭାବି ସାଇପଡିଶାରେ ମିଠା ବାଣ୍ଟିଦବ ।

ବାପା : ତୁ' ମତେ ଥଟ୍ଟା କରୁଚୁ ?

ମିନୁ : ଈଶ୍ୱର ଆପଣମାନଙ୍କୁ ସୁଖରେ ରଖନ୍ତୁ ।

(ବାପାଙ୍କ ପ୍ରସ୍ଥାନ)

(ଝିଅ ଭିତରକୁ ଚାଲିଗଲା)

ହରିଆ : ହଳଦୀ ବସନ୍ତ କୋଉଁଠୁ ଧରି ଆଣିଲୁ ବା....

ସୁପରିଣ୍ଟେଣ୍ଡେଣ୍ଟ : ତୁ' ସେଥିରୁ କ'ଣ ପାଇବୁ ?

ହରିଆ : ପଞ୍ଜୁରୀ ଭିତରେ ରଖିବୁ ନା' ଉଡେଇ ଦବୁ....

ସୁପରିଣ୍ଟେଣ୍ଡେଣ୍ଟ : ଦେଖୁଥା, କୋଉ ପାଣି କୁଆଡେ ଯାଉଛି । ଆରେ କେରାଣି

ଗୁଣ୍ଡି ବାଳିଆ ଧରିବା ଲୋକ । ବାଳିଆ ଗୁଣ୍ଡିକି, କେମିତି ତିମି ଧରିବାକୁ ହେବ, ଚେଷ୍ଟା କରିବା ଉଚିତ କି ନାହିଁ... ଯାରତ ବାପ ନାହିଁ କି ମା' ନାହିଁ । ଆମର ଏଣିକି କଟେ ପୁଅ ବାର.....

(ଭିତରୁ ଚିତ୍କାରକକ ଶୁଣି ଦିହେଁ ଦଉଡିଗଲେ)

ହରିଆ : ଆୟୋ.... ୟୋ... ସାଇପଡ଼ିଶା ଉଠେଇଦବୁ ନା' କ'ଣ ? କ'ଣ ହେଲା ?

ମିନୁ : ଏଇଟା କ'ଣ ରେକ୍ଷେଇଘର ? ଅସରପା, ଚୁଚୁନ୍ଦ୍ରା ।

ସୁପରିଣ୍ଟେଣ୍ଡେଣ୍ଟ : ଅସରପା..... ଚୁଚୁନ୍ଦ୍ରା... ଦେଖୁନୁ... ଫରେନ୍‌ରୁ ଆଇଚୁନା କ'ଣ ?

ମିନୁ : ଏମିତିକା ଘରେ କ'ଣ ମଣିଷ ରହନ୍ତି ?

ହରିଆ : ଆମେ କ'ଣ ମଣିଷ ନୁହେଁ ?

ମିନୁ : ଭାତ ତରକାରୀ ଖୋଲା ପଡ଼ିଛି । ମୂଷା, ଅସରପା ହାଉଯାଉ ହଉଛନ୍ତି । ଏମିତି ଖାଇବା ଖାଇଲେ ଦେହ ଖରାପ ହବନି ।

ସୁପରିଣ୍ଟେଣ୍ଡେଣ୍ଟ : ସେଗୁଡ଼ା କ'ଣ ଆମେ ଖାଉଚୁ ଯେ, ଜାଣିବୁ । କାଇଁ, ଯେଉଁମାନେ ଖାଉଛନ୍ତି, ତାଙ୍କର ତ କିଛି ହଉନି ?

ମିନୁ : ଏଇଟା ଶିଶୁବିକାଶ ନିକେତନ ନା ତୁମ ବିକାଶ ନିକେତନ ?

ସୁପରିଣ୍ଟେଣ୍ଡେଣ୍ଟ : ଚୁପ୍‌କର.....

ମିନୁ : ମୁଁ ଚୁପ୍ ହେବିନି । ମୁଁ ପ୍ରତିବାଦ କରିବି (ପ୍ରସ୍ଥାନ)

ହରିଆ : ଇଏ କାହାକୁ କହିବି କେଜାଣି । ସିଏ ଯାହା ପାଖେ ହଜୁର ହାଜୁର, ସିଏ ପରା ଏଠି ନସର ପସର ।

ସୁପରିଣ୍ଟେଣ୍ଡେଣ୍ଟ : (ଫୋନ୍ କରିଛି) ହ୍ୟାଲୋ.. ଚମ୍ପା.. ଚଢେଇଟିଏ ଆଣିଛିଲୋ.. ପଞ୍ଜୁରୀରେ ରଖିଛି । ଗୋଟେ ମନ ମଇନାତ.. ଜମାରୁ ଲକ୍ଷେ ଟଙ୍କା ଦେଲେ ଉଡେଇ ଦେବି । କ'ଣ ? ରାଜି । ସତେ ନା କ'ଣ ? ଠିକ୍ ଅଛି ତୁ' ଆଜି ରାତିରେ ଆସି ଫାଇନାଲ କରି ପଇସା ଦେଇଦେ । ନ ହେଲେ ମତେ ଆଉ କହିବୁନି । ଆଉ କାହାକୁ ଦେଇଦେବି । ଆଜି ରାତିରେ ।

## ନବମ ଦୃଶ୍ୟ

(ପୋଲିସ ଷ୍ଟେସନ)

ବୁଢା ଓ ସାର : ସାର୍ ନମସ୍କାର ।

ପୋଲିସ : ନମସ୍କାର .... କ'ଣ ହେଲା ?

ସାର : ସାର୍... ଶିଶୁ ବିକାଶ ନିକେତନରେ ଝିଅମାନଙ୍କୁ ନେଇ ଖରାପ କାର୍ଯ୍ୟ ଚାଲିଛି ।

ପୋଲିସ୍ : ହଁ...... ହଁ.... ମୁଁ ବି ସେ ବିଷୟରେ ଅନେକଥର ଶୁଣିଛି ।

ବୁଢା ଓ ସାର : ଆଜ୍ଞା.... ଏଇତ ପ୍ରମାଣ ।

ପୋଲିସ : ଆରେ.... ଆଜି ମୁଁ ବି ଏମିତି ଚିଠି ପାଇଛି । ଟିକେ ଅପେକ୍ଷା କର । (ଫୋନ୍ ଲଗେଇ) ହ୍ୟାଲୋ... ! ଏସ୍‌ପିଙ୍କୁ ଦେଲେ ସାର୍... ମୁଁ ଟାଉନ୍ ଥାନାରୁ ଏସ୍.ଆଇ. ସନ୍ଦୀପ ପଟ୍ଟନାୟକ କହୁଛି । ସାର୍ ଶିଶୁ ବିକାଶ ନିକେତନରେ ସେକ୍ସ ର୍‌ୟାକେଟ ଚାଲିଛି । ସେଥିପାଇଁ ପ୍ରମାଣ ସହିତ ଇନ୍‌ଫରମେସନ୍ ବି ମିଳିଛି । So, I want your permission to RED the Institution.

ଆସନ୍ତୁ ଆପଣ....

ହାବିଲଦାର, Let's Go.

## ଶେଷ ଦୃଶ୍ୟ

(ଅନାଥ ଆଶ୍ରମର ଦୃଶ୍ୟ)

ଚମ୍ପା : ଏଠି ଏ ଘର ଭିତରେ ବସି ବସି ଚିଡ଼ାଲାଗିବଣି । ଚାଲ ପାରାଦ୍ୱୀପ ଆଡେ ବୁଲି ଆସିବା ।

ମିନୁ : ନା'... ମୁଁ ଯିବିନି...

ସୁପରିଣ୍ଟେଣ୍ଡେଣ୍ଟ : ତୁ ଯିବୁ.. ତୁ' ନିଶ୍ଚୟ ଯିବୁ । ଭଲରେ ନ ଗଲେ ଚମଡା ଉତାରି ଦେବି ।

(ହରିଆ ଗୋଟେ ମଲା ମୂଷା ନେଇ ଆସିଛି)

ହରିଆ : ଦେଖୁଛୁ ଏ ମୂଷା ଛୁଆ, ତୋରି ଉପରେ ଛାଡିଦେବି ।

(ଝିଅ ଡରି ଚିତ୍କାର କରି ପଡିଯାଇଛି । ପୋଲିସ ଆସିଛି)

ପୋଲିସ : ହଇଲୋ ଚମ୍ପା, ତୁ' ଆସି ଏଠି ପହଞ୍ଚିଗଲୁଣି । ଚାଲ୍ ଏଥର ମାମୁଁ ଘରକୁ ଚାଲ । କନେଷ୍ଟବଳ, ଏମାନଙ୍କୁ ନେଇ ଗାଡିରେ ବସାଅ ।

(ଏଇ ସମୟରେ ଝିଅର ବାପା ପହଞ୍ଚିଛନ୍ତି)

ପୋଲିସ : ଆପଣଙ୍କ ଝିଅକୁ ନେଇ ଯାଆନ୍ତୁ । ଯା'..ମା'... ତୋ' ବାପା ସାଙ୍ଗରେ ଯା'...

ମିନୁ : କିଏ.. ଇଏ ? ଇଏତ ମୋ' ବାପା ନୁହଁନ୍ତି । ମୋ' ବାପା ଇଏ (ବୁଢାକୁ ଦେଖେଇ) । ଆପଣ ତାଙ୍କୁ ଫେରେଇ ଦିଅନ୍ତୁ, ମୁଁ ୟାଙ୍କ ସାଙ୍ଗରେ ଯିବି । (ପୋଲିସ, ବାପା ଫେରିଗଲେ)

ବୁଢା : ଋଲ୍ ମା'....... ଆମେ ଏ ସହର ଛାଡି ଗାଁକୁ ପଳେଇବା....

ମିନୁ : ନା, ଅଜା.... ମୁଁ ଗାଁକୁ ଯିବନି, ମୁଁ ଏଇଠି ରହିବି । ମୁଁ ପାଠ ପଢିବି । ତମେ ମତେ ହାତ ଧରି ଋଲି ଶିଖେଇଚ, ପାଠ ପଢେଇଚ, ତମ କର୍ତ୍ତବ୍ୟ ଶେଷ କରିଚ । ଏଣିକି ତମକୁ ପୋଷିବା ଦାୟିତ୍ୱ ମୋର । ମୁଁ ଆଉ ଏଣିକି ପଙ୍ଗୁ କିମ୍ବା ବିକଳାଙ୍ଗ ନୁହେଁ । ଅଜା ମୁଁ ଯଥେଷ୍ଟ ସକ୍ଷମ ହେଇଛି । ମୁଁ ଏଣିକି କାହା ଦୟା ଉପରେ ବଞ୍ଚିବି ନାହିଁ । କଥାରେ ଅଛି-

ପାଠ ପଢିବି ଓକିଲ ହେବି<br>
କାଳିଆ ଘୋଡାରେ ଚଢିବି<br>
ମଧୁବାବୁ ସଙ୍ଗେ ଲଢିବି ।<br>
କିନ୍ତୁ ଏଣିକି ମୋର ଲକ୍ଷ୍ୟ ହେଲା,<br>
ପାଠ ପଢିବି ଓକିଲ ହେବି,<br>
କାଳିଆ ଘୋଡାରେ ଚଢିବି,<br>
ମୋ' ବାପା ସଙ୍ଗେ ଲଢିବି ।<br>
ସମାଜ ସାଙ୍ଗରେ ଲଢିବି ।<br>
ଅଧିକାର ପାଇଁ ଲଢିବି ।<br>
ଅଧିକାର ପାଇଲେ ଯାଇ ଛାଡିବି ।

(ଯବନିକା)



# ଆଦ୍ୟ- ଅଧୁନା- ଭବିତବ୍ୟ
## ପାତ୍ର ପରିଚୟ

୧. କୋରସ (କୋରସର ସମସ୍ତ ବ୍ୟକ୍ତି ଭିନ୍ନ ଭିନ୍ନ ଚରିତ୍ରରେ ଅଭିନୟ କରିପାରିବ ଏବଂ ଦରକାର ପଡିଲେ ଜଣେ ଜଣେ ଛାତ୍ରଛାତ୍ରୀ ଏକାଧିକ ଚରିତ୍ରରେ ମଧ୍ୟ ଅଭିନୟ କରିପାରିବେ ଏଣୁ ସେମାନଙ୍କର Costume Common Costume ହେବା ଦରକାର)

୨. ସୂତ୍ରଧର (କୋରସର ମୁଖିଆ)

| | | | |
|---|---|---|---|
| ୩. | ଶିବ | ୪. | ପାର୍ବତୀ |
| ୫. | ଜନକ | ୬. | ରାମଚନ୍ଦ୍ର |
| ୭. | ଲକ୍ଷ୍ମଣ | ୮. | ସୀତା |
| ୯. | ରାବଣ | ୧୦. | ବିଭିଷଣ |
| ୧୧. | ଧୋବା | ୧୨. | ଧୋବଣୀ |
| ୧୩. | ଲବ | ୧୪. | କୁଶ |
| ୧୫. | ବାଲ୍ମିକୀ (ଗୁରୁଦେବ) | ୧୬. | କୃଷ୍ଣ |
| ୧୭. | ଦ୍ରୁପଦ | ୧୮. | ଦ୍ରୌପଦୀ |

୧୯. ଯୁଧିଷ୍ଠିର, ଅର୍ଜୁନ, ଭୀମ, ନକୁଳ ଓ ସହଦେବ

୨୦. ଶକୁନି, ଦୁର୍ଯ୍ୟୋଧନ, ଧୃତରାଷ୍ଟ୍ର, ଦୁଃଶାସନ

୨୧. ସଞ୍ଜୟ

୨୨. ତନ୍ତୀ (ବାପା)

୨୩. ତନ୍ତୀର ଝିଅ (ରୂପା)

୨୪. ସୁପରଭାଇଜର

୨୫. ରୋବଟ

୨୬. ଶ୍ରମିକ ୧, ଶ୍ରମିକ ୨

୨୭. ୨ ଟି କଙ୍କାଳ ଚରିତ୍ର

# ଆଦ୍ୟ- ଅଧୁନା- ଭବିତବ୍ୟ

*ନାଟକଟିର ପ୍ରତ୍ୟେକ ଶ୍ଳୋକ ଓ ସଂଳାପକୁ ଅଭିନେତା ଅଭିନେତ୍ରୀମାନେ ନିଜର ଶରୀର ଓ ଅଙ୍ଗଭଙ୍ଗୀ ମାଧ୍ୟମରେ ଅଭିନୟ କରି ବୁଝାଇବେ ଏବଂ ପ୍ରତିଟି ଧାଡିର ଅଭିନୟ ବେଳେ ନାଟ୍ୟମଞ୍ଚରେ ଅଭିନେତା ଅଭିନେତ୍ରୀ ଦ୍ୱାରା ନାଟ୍ୟଦୃଶ୍ୟ ନୂତନ ରୂପେ ପରିସ୍ଫୁଟ ହେବ । ମୋଟାମୋଟି ନାଟକଟିରେ ଦୃଶ୍ୟସଜ୍ଜା ସୃଷ୍ଟିକରିବ ଅଭିନେତା ଅଭିନେତ୍ରୀମାନଙ୍କର ଶାରୀରିକ ସନ୍ନିବେଶର ସାଜସଜ୍ଜା ।*

*ଏହି ନାଟକର ପ୍ରଥମଭାଗ (ପ୍ରସ୍ତାବନା)ରେ ଯେତେଦୂର ସମ୍ଭବ ଦର୍ଶକମାନଙ୍କୁ ସେମାନେ ମଧ୍ୟ ନାଟକର ଅଭିନ୍ନ ଅଂଶ ଭାବେ ଅନୁଭବ କରାଇ ଦିଆଯିବା ପ୍ରୟୋଜନ ।*

## ଦୃଶ୍ୟ-୧

ଶ୍ଳୋକ ପଢୁ ପଢୁ Chorus (ଅଭିନେତା ଅଭିନେତ୍ରୀ ହାତରେ ଫୁଲଡାଲା, ଚାଉଳ, ଦୁବ, ବରକୋଳିପତ୍ର, ଧୂପ ଆଦି ନେଇ ପ୍ରେକ୍ଷାଳୟରେ ପ୍ରବେଶ କରି ଫୁଲ, ପତ୍ର ଆଦି ଦର୍ଶକଙ୍କ ଉପରକୁ ଫିଙ୍ଗି ସେମାନଙ୍କୁ ବନ୍ଦାପନା କରିବେ)

(ଆଲୁଅ ଆସିବା ବେଳକୁ ଦେଖାଗଲା ସୂତ୍ରଧର ଆଗରେ ଜର୍ଜର ଧରି ସବୁ ଅଭିନେତା ଅଭିନେତ୍ରୀଙ୍କ ସହିତ ମଞ୍ଚରେ ଓଁ ମନ୍ତ୍ରସହ ପ୍ରବେଶ କଲେ, ମଞ୍ଚର ମଧ୍ୟଭାଗରେ ଜର୍ଜର ପୂଜାକରି ମନ୍ତ୍ର ଗାଇଲେ ।

କୋରସ :- ଓଁ ଗଣନା ଗଣପତି ତ୍ୱାମ୍ ହଓ୍ୱା ମହେ
କବିଂ କବିନାଂ ଉପମଶ୍ର ବସ୍ତବମ୍ ଜ୍ୟୋଷ୍ଟଶ୍ରରାଜମ୍
ବ୍ରହ୍ମଣାଂ ବ୍ରହ୍ମଣାତ ସାଦନମ୍ ସ୍ୱ / ଶୃଣ୍ଣନ୍ନତିଭି ସୀଦ
ବାଗ୍‌ଦେବୀ ସରସ୍ୱତୀ ବାଗ୍‌ଦେବୀ ବାଜିନିବତୀ- ଧିନମ
ବତ୍ରିୟାବତୁ, ଗଣେଶାୟ ନମଃ, ସରସ୍ୱତୀ ନମଃ ଓଁ
ଶ୍ରୀଗୁରବେ ନମଃ ।

(ମନ୍ତ୍ରପରେ ମଞ୍ଚର ଗୋଟିଏ କୋଣରେ ଜର୍ଜର ସ୍ଥାପନ କରି ଫେରିଯିବ ।)

(ସୂତ୍ରଧର ପ୍ରବେଶକରି)

ସୂତ୍ରଧର : ଆଜ୍ଞା ନମସ୍କାର । ମୁଁ ଏ ନାଟକର ସୂତ୍ରଧର । ବଡ଼ ଅଡୁଆରେ ପଡ଼ିଯାଇଛି ଆଜ୍ଞା ଆମ ନିର୍ଦ୍ଦେଶକ ମହାଶୟ ହଠାତ୍ ମୋତେ ଆସି କହିଲେ ଆମ ନାଟକ ବିଷୟରେ କିଛି କହିବା ପାଇଁ । ମୁଁ କ'ଣ

କହିବି କହିଲେ । ସେ ପୁଣି କହିଲେ ମୁଁ ଆପଣମାନଙ୍କୁ ଯାହା କହିବି ଅଭିନେତାମାନେ କେହି ଶୁଣି ପାରିବେ ନାହିଁ । କି କଥା ଆଜ୍ଞା ସେମାନେ ପଛରେ ବସିଛନ୍ତି କେମିତି ଶୁଣି ପାରିବେ ନାହିଁ କହିଲେ ? କହିବାକୁ ତ କହିଛନ୍ତି । ଆଜ୍ଞା ମୁଁ ଆପଣମାନଙ୍କୁ କହିଦେଉଛି । ଅପାଣମାନେ କେହି ତାଙ୍କୁ କହିବେ ନାହିଁ ଯଦି କହିଦେବେ ଆଜ୍ଞା ମୁଁ ମଲିକି ? ଆଜ୍ଞା ପୁରାଣ କହେ ପ୍ରକୃତି ଓ ପୁରୁଷର ଇଛା ବା କାମନାରୁ ସୃଷ୍ଟିର ସୃଷ୍ଟି । କିନ୍ତୁ "ଡ଼ାରୱିନ" ଙ୍କ ମତରେ ପ୍ରକୃତି ତା ଜୈବିକ ଆବଶ୍ୟକତା ପରିପୂରଣ ପାଇଁ ବିବର୍ତ୍ତନବାଦ ପ୍ରକ୍ରିୟାରେ ଜୀବଜଗତର ସୃଷ୍ଟି । ଆଜ୍ଞା କହିଲେ ଦେଖି ଏକକୋଷୀ ପ୍ରାଣୀ ବା ଏମିବା ଠାରୁ ଆରମ୍ଭ କରି ବଣ ମଣିଷ ମାଙ୍କଡ ପର୍ଯ୍ୟନ୍ତ ସବୁ ବଞ୍ଚିଛନ୍ତି, କେମିତିକା ? କିନ୍ତୁ ବଞ୍ଚିଛନ୍ତି, ଯେମିତି ଯୋର ଯାର ମୁଲକ ତାର ନ୍ୟାୟରେ ନୁହେଁ କି ? ସେଇ ଯୋର ପାଇବା ପାଇଁ ମଣିଷ ତାର ବୁଦ୍ଧିର ପ୍ରୟୋଗ କରିଛି । ଆଉ ଯେତେ ବୁଦ୍ଧିମାନ ହୋଇଛି ସେତେ କାମନାର ଅସରନ୍ତି ପ୍ରୟୋଜନ ଭିତରେ ଏ ସମାଜକୁ ଆଗେଇ ନେଇଛି । ଆଜ୍ଞା ଚାଲନ୍ତୁ ଦେଖିବା ଆମ ନାଟକ "ଆଦ୍ୟ ଅଧୁନା ଭବିତବ୍ୟ" ।

### ଦଶ୍ୟ- ୨

(ଡମ୍ବରୁର ଶବ୍ଦ, ଶିବଙ୍କ ତାଣ୍ଡବ ନୃତ୍ୟ ମଧ୍ୟରେ ପାର୍ବତୀଙ୍କର ପ୍ରବେଶ ଓ ସେମାନଙ୍କ ନୃତ୍ୟ)

(ନୃତ୍ୟମଧ୍ୟରେ ସେମାନଙ୍କ ଆଗରେ (Chorus) ଧରାଧରି ହୋଇ ମୁଣ୍ଡତଳକୁ ପୋତି ପୃଥିବୀ ଭଳି ଏକ ଗୋଲାକାର ପିଣ୍ଡ ହୋଇ ବୁଲିବାକୁ ଲାଗିଲେ ଓ ନୃତ୍ୟ ଶେଷରେ ତାର ବିସ୍ଫୋରଣ ହେଲା, ସେଇଥିରୁ ଗଛ, ଲତା ଓ ବିଭିନ୍ନ ଜୀବଜନ୍ତୁ, ପଶୁପକ୍ଷୀ ବଣମଣିଷ ଆଦିର ସୃଷ୍ଟି ହେଲା । Primitive ageରେ ମଣିଷମାନଙ୍କର ହରିଣ ଶୀକାର ବିଜୁଳି ଘଡଘଡି ଓ ବର୍ଷାର ଆରମ୍ଭ । ବଣ ମଣିଷମାନେ ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ (ଅନ୍ଧାର ହେଲା ବର୍ଷାର ଆଳାପଆରମ୍ଭ) (Music ରେ)

କ୍ରମେ ଦେଖାଗଲା ବଣ ମଣିଷମାନେ ମଣିଷ ଭଳି ହୋଇ ତିନିଭାଗ ହୋଇଗଲେ ଏବଂ କଥା କହିବା ଶିଖିଲେ । ଦଳେ କହିଲେ, "ଅ" ଦଳେ କହିଲେ "ଉଁ" ପୁଣି ଦଳେ କହିଲେ "ମ" ଏହିପରି ଅ,ଉ,ମ ରୁ ଆରମ୍ଭ "ଓଁ" (ଶବ୍ଦ) ତାପରେ (Chorus) ତିନିଭାଗ ହୋଇ ଦର୍ଶକଙ୍କ ମଧ୍ୟରେ ପଶିଗଲେ ଓ ମଞ୍ଚରେ ବସି ରହିଲେ ଜନକ "ଓଁ" ଶବ୍ଦକୁ ଲଗାଇ, ପଛରେ ଲୁଚି ବସିଲେ ସୀତା)

ଜନକ : (ମଞ୍ଚରେ)
ଓଁ ସେହେନା ଭବତୁ, ସେହେନୌ ଭୂନକ୍ତୁ
ସହବିର୍ଯ୍ୟଂ କରବା ବହୈ
ତେଜସ୍ୱୀନା ବଧିତମ୍ ଅସ୍ତୁ
ମା ବିଦ୍ୱିଷା ବହୈ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।
ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା' କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।

ନେପଥ୍ୟରେ
୧ମ ଦଳ : ଓଁ ଅହଂ ବହ୍ମୋସ୍ମି
୨ୟ ଦଳ : ଓଁ ଅହଂ ଜୀବୋସ୍ମି
୩ୟ ଦଳ : ଓଁ ଅହଂ ପ୍ରାଣୋସ୍ମି
୪ର୍ଥ ଦଳ : ଓଁ ପ୍ରାଣ ଏବ ଅନ୍ନମ୍

(ତା ପରେ ସମସ୍ତ କୋରସ୍ ଏକାରଙ୍ଗରେ ଶାନ୍ତିମନ୍ତ୍ର ପଢି ପଢି ଦର୍ଶକଙ୍କୁ ପରିକ୍ରମାକରି ମଞ୍ଚ ଉପରକୁ ଗଲେ ।)

ମନ୍ତ୍ର : ଓଁ ଦ୍ୟୌଶାନ୍ତିଃ, ଅନ୍ତରୀକ୍ଷଃ ଶାନ୍ତିଃ
ପୃଥିବୀ ଶାନ୍ତିଃ, ବନସ୍ପତୟଃ ଶାନ୍ତିଃ
ଔଷଧୟଃ ଶାନ୍ତିଃ, ବ୍ରହ୍ମ ଶାନ୍ତିଃ
ବିଶ୍ୱଦେବାଃ ଶାନ୍ତିଃ , ବ୍ରହ୍ମ ଶାନ୍ତିଃ
ସର୍ବଂ ଶାନ୍ତିଃ, ଶାନ୍ତିରେବ ଶାନ୍ତିଃ
ମାମା ଶାନ୍ତିରେଧି,
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।
ସମସ୍ତେ ମଞ୍ଚରେ ଯାଇ $\wedge$ ଏହି ଆକୃତିରେ ଛିଡା ହେଲେ

କୋରସ୍ : ପ୍ରଣାମ ହେ ରାଜର୍ଷି ଜନକ କି କାରଣେ କରିଲେ ସ୍ମରଣ ?
(ଧ୍ୟାନରତ ଜନକଙ୍କ ଧ୍ୟାନ ଭଙ୍ଗ କଲେ)

ଜନକ : ତଥାସ୍ତୁ (ଧ୍ୟାନରୁ ଉଠି) ହେ ଋଷିଗଣ । ମାନବ ସମାଜ ପାଇଁ ମୁଁ ଏକ ନୂତନ ଶସ୍ୟକଣାର ସର୍ଜନା କରିଛି ।

| | | |
|---|---|---|
| ସମସ୍ତେ | : | ଶସ୍ୟ କଣାର ସର୍ଜନା ? |
| ଜନକ | | ହଁ ଯାହାକୁ ସମଗ୍ର ମାନବ ଜଗତ କଲ୍ୟାଣ ପାଇଁ ଉତ୍ସର୍ଗ କରିବା ଉଦ୍ଦେଶ୍ୟରେ ମୁଁ ଆପଣମାନଙ୍କୁ ନିମନ୍ତ୍ରଣ କରିଛି । |
| ସମସ୍ତେ | : | ସାଧୁ ! ସାଧୁ ! |
| ୧ମ ଋଷି | : | ତା'ର ସୃଷ୍ଟି ? |
| ୨ୟ ଋଷି | : | ତା'ର ନାମ ? |
| ୩ୟ ଋଷି | : | ତା'ର ରୂପ କାନ୍ତି ? |
| ଜନକ | | ତାକୁ ମୁଁ ଲଙ୍ଗଳ ମୁନରେ ସିଆର ଗାରରୁ ଉତ୍ପନ୍ନ କରିଛି । ତେଣୁ ତା'ର ନାମରକଣ କରିଛି ସୀତା ସୁବର୍ଣ କାନ୍ତି ସୀତା......... |
| ସମସ୍ତେ | | ସୁବର୍ଣ୍ଣ କାନ୍ତି ସୀତା ? |
| ଜନକ | | ଏଇ ଦେଖନ୍ତୁ - (ସୀତାଙ୍କୁ ଦେଖାଇଲେ) |
| ସମସ୍ତେ | : | ସାଧୁ! ସାଧୁ ! |
| ୪ର୍ଥ ଋଷି | : | କିନ୍ତୁ ଏହାର ପ୍ରୟୋଗ ବିଧି ? |
| ଜନକ | : | ସେଇଥିପାଇଁ ତ ଆପଣଙ୍କୁ ନିମନ୍ତ୍ରଣ କରିଛି । ଆପଣମାନେ ଏହାର ପ୍ରୟୋଗ ବିଧି ଜାଣି ମାନବ ଜାତିର ମଙ୍ଗଳ ପାଇଁ ସୃଷ୍ଟିର କୋଣେ କୋଣେ ଏହାର ପ୍ରଚାର କରିବେ- ଥରେ ଏ ଶସ୍ୟ ଉତ୍ପାଦନର ବିଧିମାନବ ସମାଜ ଜାଣିଗଲେ କ୍ଷୁଧାକୁ ସେ ଆୟତ୍ତ କରିପାରିବ । |
| ସମସ୍ତେ | : | କି ଆଶ୍ଚର୍ଯ୍ୟ ? |
| ଜନକ | : | ଏବେ ଦେଖ ଏହାର ପ୍ରୟୋଗ ବିଧି । (ହଳ ଚଳାଇବାକୁ ଇଶାରା ଦେଲେ ହଳ ଚାଲିଲା, ଋଷିମାନଙ୍କ ମଧରେ ଦଳେ ବଳଦ ଓ ହଳିଆ ହେଲେ ଜନକ ବିହନ ବୁଣିଲା ଅନ୍ୟମାନେ ଭୂଇଁରେ ଆଣ୍ଠୁ ମାଡି ଲେପଟି ହୋଇ ଶୋଇଗଲେ । ଜନକ ଗାୟତ୍ରୀ ମନ୍ତ୍ର ପଢି ଧାନ ବୁଣିଲେ - ସମସ୍ତେ ଗାୟତ୍ରୀ ମନ୍ତ୍ର ପଢିଲେ)<br>ଓଁ ଭୂଃ ଭୁବଃ ସ୍ୱଃ ତତ୍ ସବିତୁ ର୍ବରେଣ୍ୟମ୍<br>ଭର୍ଗୋ ଦେବସ୍ୟ ଧୀମହିଃ<br>ଧୀୟୋ ୟୋନଃ ପ୍ରଚୋଦୟାତ୍ । (୩ ଥର)<br>(ଗାୟତ୍ରୀ ମନ୍ତ୍ର ପଢି ସାରିଲା ପରେ ହଳ ହଳିଆ ଚାଲିଗଲେ, କ୍ରମେ ଆଣ୍ଠେଇ ପଡିଥିବା ଅଭିନେତା ମାନେ ଉପରକୁ ଉଠିଲେ । ତା ଭିତରେ ସୀତା ସଂଗୀତର ତାଳେ ତାଳେ ନାଚିଲେ । (ଦେଖାଗଲା ଧାନ |

କ୍ଷେତରେ ସବୁଜିମାର ଢେଉ ଖେଳୁଛି । ସମସ୍ତେ ଖୁସି ହେଲେ)
(ଏଠାରେ ଗୀତ ଦିଆଯାଇପାରେ)

ସମସ୍ତେ : ସାଧୁଃ ! ସାଧୁଃ ! ଧନ୍ୟ ତୁମର ତପସ୍ୟା ତୁମର ତପସ୍ୟା ଆଜି ସାର୍ଥକ୍ ହୋଇଛି ।

ଜନକ : କିନ୍ତୁ ପରିପକ୍ୱ ଶସ୍ୟ ଉତ୍ପାଦନ ହେବାକୁ ଆମକୁ ଯଥେଷ୍ଟ ଅପେକ୍ଷା କରିବାକୁ ପଡ଼ିବ । ସେ ପର୍ଯ୍ୟନ୍ତ ଏହାକୁ ଜୀବଜନ୍ତୁଙ୍କ କବଳରୁ ରକ୍ଷା କରିବା ଦରକାର ।

ସମସ୍ତେ କିନ୍ତୁ ଏହାର ରକ୍ଷଣା ବେକ୍ଷଣ କରିବ କିଏ ?

ଜନକ ଆପଣମାନେ ଅନୁମତି ଦେଲେ ଏହାକୁ ମୁଁ ରଘୁକୁଳପତି ବୀର ଶ୍ରେଷ୍ଠ ରାମଚନ୍ଦ୍ରଙ୍କ ଦାୟତ୍ୱରେ ଅର୍ପଣ କରନ୍ତି ।

ସମସ୍ତେ : ଯାହା ଆପଣଙ୍କ ଇଚ୍ଛା ।

ଜନକ : (ରାମଚନ୍ଦ୍ରଙ୍କୁ ଆହ୍ୱାନ କଲେ) ହେ ରଘୁକୁଳ ତିଳକ ବୀରଶ୍ରେଷ୍ଠ ରାମଚନ୍ଦ୍ର, ଆପଣ ଏଠାରେ ଉପସ୍ଥିତ ହୁଅନ୍ତୁ ।

ରାମକ୍ଷ୍ମମଣ : (ପ୍ରେବଶ ) ପ୍ରଣାମ ଘେନ ହେ ରାଜର୍ଷି ଜନକ ।

ଜନକ : ତଥାସ୍ତୁ ।

ରାମ : କି କାରଣେ କରିଲେ ସ୍ମରଣ ?

ଜକନ : ହେ ବୀରଶ୍ରେଷ୍ଠ ରାମଚନ୍ଦ୍ର, ମାନବ ସମାଜ ପାଇଁ ମୁଁ ଏକ ନୂତନ ଶସ୍ୟକଣାର ସର୍ଜନା କରଛି । କିନ୍ତୁ ଏଇ ଶସ୍ୟର ପରିପକ୍ୱ ସମୟ ଆସିବା ପର୍ଯନ୍ତ ଆମକୁଯଥେଷ୍ଟ ସମୟ ଅପେକ୍ଷା କରିବାକୁ ହେବ । ସେ ପର୍ଯ୍ୟନ୍ତ ଏହାକୁ ଜୀବଜନ୍ତୁଙ୍କ କଳବଳରୁ ରକ୍ଷା କରିବା ଦରକାର । ଆପଣ ଏହାର ରକ୍ଷଣାବେକ୍ଷଣର ଦାୟିତ୍ୱ ଗ୍ରହଣ କଲେ ଆମେ ଧନ୍ୟ ହେବୁ ।

ରାମଲକ୍ଷ୍ମଣ : ତବ ଆଜ୍ଞା ଶିରୋଧାର୍ଯ୍ୟ ।

ଜନକ : ତଥାସ୍ତୁ !

ରାମଲକ୍ଷ୍ମଣ : ପ୍ରଣାମ ଘେନନ୍ତୁ ଋଷିବର ।

କୋରସ : ତଥାସ୍ତୁ !

(ରାମ ଲକ୍ଷ୍ମଣ ଆଗେଇ ଆସିଲେ । ଜନକ ଓ ଋଷିମାନଙ୍କୁ ପ୍ରଣାମ କରି ଦାୟିତ୍ୱ ଗ୍ରହଣ କରିଲେ ।)

ଜନକ : ଚଲନ୍ତୁ ଏବେ ଋଷିଗଣ (ଋଷିଗଣ ପ୍ରସ୍ଥାନ)

ଗୀତ : (ଗୀତ ସମୟରେ ରାମ ଲକ୍ଷ୍ମଣ ପ୍ରକୃତିର ଦୃଶ୍ୟ ଉପଭୋଗ କରୁଥିବେ ।)

ପ୍ରସ୍ରବଣ ଶୈଳେକଲେ ବସତି
ସୌମିତ୍ରୀ ସଙ୍ଗେ ପ୍ରଭୁ ରାଘବପତି
ବହଇ ଗୋଦାବରୀ ସେ ଗିରି ପାଦେ
ଶିଳାବଂଧୁର ଶେଯେ ଝର୍ଝର ନାଦେ
ଏକେ ସୁନ୍ଦର ଗିରି ଝର ସିରାଳ
ଦୁଜେ ମହିରେ ବିଜେ ବରଷାକାଳ
ଲକ୍ଷ୍ମଣ ଘନ ଦେଖି ନାଚଇ କେକୀ
ଭକତ ଯଥା ଭବମାୟା ଉପେକ୍ଷି
ବିତରେ ଅଜାତରେ ଜୀବନ ଘନ
ଧନ୍ୟ ସେ ଦାତା ଜାଣେ ଯାଚକ ମନ ।

ରାମ : ଆହା କି ସୁନ୍ଦର ! କି ସୁନ୍ଦର ଏ ପ୍ରକୃତି । ସତେ ଯେମିତି ତା'ର ରୂପ ସମ୍ଭାର ମେଲାଇ ଚାହିଁ ବସିଛି ।

(Music ସହିତ ସୀତା ନାଚିବେ ରାମ ତାଙ୍କୁ ଦେଖି)

ରାମ : ଅପୂର୍ବ ! କି ଅପୂର୍ବ ସତେ ଏ ଦୃଶ୍ୟ ! ସତରେ ପ୍ରକୃତିର ଶୋଭା ଅବର୍ଣ୍ଣନୀୟ । ଆଉ ଏ ଶ୍ୟାମଳ ଶସ୍ୟ କ୍ଷେତ୍ର ତା ଠାରୁ ଅଧିକ ମନୋହର । ତା ଠାରୁ ଅଧିକ ଚିତା କର୍ଷକ । ଲକ୍ଷ୍ମଣ ।

ଲକ୍ଷ୍ମଣ : ଭ୍ରାତା !

ରାମ : ଏ ଶ୍ୟାମଳ ଶସ୍ୟ କ୍ଷେତ୍ରକୁ ଦୁଷ୍ଟ ଶକ୍ତି କବଳରୁ ଆମକୁ ରକ୍ଷା କରିବାକୁ ପଡିବ ।

ଲକ୍ଷ୍ମଣ : ଯଥା ଆଜ୍ଞା ଭ୍ରାତା ।

ରାମ : ଦେଖ ଦେଖ ଲକ୍ଷ୍ମଣ ପଶ୍ଚିମ ଆକାଶେ ଭାଲେରି ଶିଖରେ ସୂର୍ଯ୍ୟଦେବ ଅସ୍ତାୟମାନ ।

ରାମଲକ୍ଷ୍ମଣ : ପ୍ରଣାମ ହେ ସୂର୍ଯ୍ୟଦେବ ।

ରାମ : ଲକ୍ଷ୍ମଣ ! ସନ୍ଧ୍ୟା ଆସନ୍ନପ୍ରାୟ ତୁମକୁ ଅନେକ ବେଳୁ କ୍ଷୁଧା ଅନୁଭୁତ ହେବନି ଯାଅ ଲକ୍ଷ୍ମଣ ନିକଟସ୍ଥ ବୃକ୍ଷରୁ କିଛି ଫଳ ସଂଗ୍ରହ କର । (ଲକ୍ଷ୍ମଣ ଫଳଆଣିବା ପାଇଁ ଯାଇଛି କିଛି ଫଳ ଆଣିଛି । ରାମ ଶସ୍ୟ

କ୍ଷେତ୍ର ରୂପୀ ସୀତାଙ୍କୁ ନିରିକ୍ଷଣ କରୁଛନ୍ତି । ଲକ୍ଷ୍ମଣ ମାଇମ୍‌ରେ ଧନୁ ଶର ଦ୍ୱାରା ଗଛରୁ ଫଳ ତୋଳୁଛନ୍ତି ।)

ଲକ୍ଷ୍ମଣ : ଭ୍ରାତା (ଫଳ ଆଣି ରାମକୁ ଦେଇଛି)

ରାମ : ନିଅ ଲକ୍ଷ୍ମଣ (ରାମ ଲକ୍ଷ୍ମଣକୁ ଫଳ ଦେବେ କିନ୍ତୁ ଖାଅ ବୋଲି କହିବେ ନାହିଁ ତେଣୁ ଲକ୍ଷ୍ମଣ ଫଳ ନେବେ ଓ ରାମଙ୍କୁ ଦେଖି ଫଳ ରଖି ଦେବେ ରାମ କିନ୍ତୁ ଫଳ ଖାଇଦେବେ ।)

ଲକ୍ଷ୍ମଣ : ଭ୍ରାତା ଆପଣ ଏଥର ଶୋଇଯାନ୍ତୁ (ରାମ ଲକ୍ଷ୍ମଣଙ୍କ କୋଳରେ ମୁଣ୍ଡଦେଇ ଶୋଇଛନ୍ତି) (ଏତିକି ବେଳେ ହରିଣ ପ୍ରବେଶ କଲେ ହରିଣ ସୀତା ରୂପି ଶସ୍ୟକୁ ଖାଇବାକୁ ଚାହୁଁଛି)

ସୀତା : ଆର୍ଯ୍ୟ ପୁତ୍ର ! ଆର୍ଯ୍ୟ ପୁତ୍ର !

ରାମଲକ୍ଷ୍ମଣ : ପ୍ରବେଶ କରି ହରିଣଙ୍କୁ ଗୋଡାଇଛନ୍ତି ଧରିବା ପାଇଁ ।

ରାମ : ତୁମେ ଅପେକ୍ଷା କର ଲକ୍ଷ୍ମଣ ! ମୁଁ ଆସୁଛି । (ପ୍ରସ୍ଥାନ)

ଲକ୍ଷ୍ମଣ : ଭ୍ରାତା ଧାଆଁନା ଏ ସ୍ୱର୍ଣ୍ଣ ମୃଗ ପାଇଁ । (ମୃଗ ପଛେ ପଛେ ରାମଙ୍କର ପ୍ରସ୍ଥାନ ନେପଥ୍ୟରୁ ତ୍ରାହି ଲକ୍ଷ୍ମଣ)

ରାମ : (ନେପଥ୍ୟରୁ) ତ୍ରାହି ଲକ୍ଷ୍ମଣ .......... ।

ଲକ୍ଷ୍ମଣ : ଭ୍ରାତା ........... ।

ରାମ : ତ୍ରାହି ଲକ୍ଷ୍ମଣ ... ।

ଲକ୍ଷ୍ମଣ : ଭ୍ରାତା.... ।

ରାମ : ତ୍ରାହି ଲକ୍ଷ୍ମଣ ...... ।

ଲକ୍ଷ୍ମଣ : (ଓମ୍ କହି ତୀର ଦ୍ୱାରା ୩ଟି ଗାର ଟାଣିଲେ) ଭ୍ରାତା... ଭ୍ରାତା.. (ପ୍ରସ୍ଥାନ)

(ପ୍ରସ୍ଥାନ ପରେ ରାବଣ ପ୍ରବେଶ କଲେ ଛପି ଛପି ଆସି ଲକ୍ଷ୍ମଣର ଗାର ଛୁଇଁବା ମାତ୍ରେ ଚିତ୍କାରକରି ପଛକୁ ଘୁଞ୍ଚିଗଲେ ଓ ଓଁ କହି ମନେ ମନେ ମନ୍ତ୍ରପଢି ସେ ଗାରକୁ ଅସ୍ତ୍ରଦ୍ୱାରା ଛେଦନ କଲେ ଓ ରାକ୍ଷସମାନେ ପ୍ରବେଶ କରି ଧାନ କାଟିଲେ ରାବଣ ନିଜେ ସୀତାଙ୍କୁ ଘେନି ପ୍ରସ୍ଥାନ ଉଦ୍ୟତ)

ସୀତା : ଆର୍ଯ୍ୟ ପୁତ୍ର...ଆର୍ଯ୍ୟ ପୁତ୍ର.... ମୋତେ ଛାଡି ଦେ ପାଷାଣ୍ଡ, (ରାବଣର ହସ ଓ ପ୍ରସ୍ଥାନ)

## ଦୃଶ୍ୟ-୩

(ରାକ୍ଷସମାନେ ଅଭିନେତା ରୂପକ ଧାନ ଆଣି ଗୋଲାକାରରେ ଗଦା କରିଛନ୍ତି, ମଝିରେ ସୀତା । ରାବଣ ଓ ବିଭୀଷଣର ପ୍ରବେଶ ।)

(ରାବଣ ସୀତାଙ୍କୁ ଦେଖାଇ)

ରାବଣ : ଦେଖ ବିଭୀଷଣ, ରାମଙ୍କର ସୁବର୍ଣ୍ଣ ସୀତା ଆଜି ମୋର କରାୟତ ।

ବିଭୀଷଣ : ଏହା କିନ୍ତୁ ଅନ୍ୟାୟ ଭ୍ରାତା, ଆପଣ ଜ୍ଞାନୀ, ବୀର, ତ୍ରିଭୁବନ ବିଜୟୀ ସମ୍ରାଟ ଦଶାନନ । ଆପଣଙ୍କ ପକ୍ଷରେ ଅନ୍ୟର ପଦାର୍ଥ ଅପହରଣ କରିବା ଶୋଭା ପାଏନା । ଆପଣଙ୍କର ବା ଅଭାବ କ'ଣ ଅଛି । ସ୍ୱର୍ଣ୍ଣପ୍ରସୁ ଲଙ୍କାର ଅଧୀଶ୍ୱର ଯଦି ଚୌର୍ଯ୍ୟ ବୃତ୍ତି ଅବଲମ୍ବନ କରି ଭୋଗ କରନ୍ତି ସାଧାରଣ ପ୍ରଜାଙ୍କୁ ବା କ'ଣ କହିବା ?

ରାବଣ : ମୂର୍ଖ, ତୁ କ'ଣ ଭାବୁଛୁ ମୁଁ ଏହାକୁ ଭୋଗ କରିବା ପାଇଁ ଅପହରଣ କରିଛି ?

ବିଭୀଷଣ : ଆଉ ତା ହେଲେ ?

ରାବଣ : ଏ ଜ୍ଞାନ କୌଶଳ ଯଦି ସାରା ପୃଥିବୀରେ ପ୍ରଚରିତ ହୁଏ, ତା' ହେଲେ କୃଷିଭିତ୍ତିକ ସଭ୍ୟତାର ପ୍ରଗତି ସମ୍ମୁଖରେ ଆମର ଏ ସ୍ୱର୍ଣ୍ଣ ପ୍ରସୁ ଲଙ୍କା ମଧ୍ୟ ତୁଚ୍ଛ ହୋଇଯିବ । ତାଙ୍କର ସେହି ଜ୍ଞାନ କୌଶଳକୁ ଅପହରଣ କରି ମୁଁ ତାଙ୍କୁ ଆଜି ପୁଣି ଥରେ ନିସ୍ୱ କରିଦେଇଛି । ଏଣିକି, ଏ ତ୍ରିଭୂବନରେ ମୋର ଜ୍ଞାନର ପ୍ରଗତିକୁ ପ୍ରତିହତ କରିବା ପାଇଁ ଆଉ କେହି ରହିବେ ନାହିଁ ।

ବିଭୀଷଣ : କିନ୍ତୁ ଏହା ଯେ ଚୌର୍ଯ୍ୟ ବୃତ୍ତି ।

ରାବଣ : ଚୌର୍ଯ୍ୟ ବୃତ୍ତି ନୁହେଁ ମୂର୍ଖ, କୁଟନୀତି । ଏ ସଂସାରରେ ଅପ୍ରତିଦ୍ୱନ୍ଦୀ ହେବାକୁ ହେଲେ, ଛଳେ, ବଳେ ଅଥବା କୌଶଳେ ପ୍ରତିଦ୍ୱନ୍ଦୀକୁ ପ୍ରତିହତ କରିବାକୁ ପଡିବ ।

ବିଭୀଷଣ : କିନ୍ତୁ ଯଦି ଏହା ଆପଣଙ୍କର ଅଭିପ୍ରାୟ ହୁଏ, ତାହାହେଲେ ମୁଁ ତାହାକୁ ପ୍ରତିହତ କରିବି ।

ରାବଣ : କ'ଣ କହିଲୁ ଅପଦାର୍ଥ, ତୁ ମୋର ବିରୋଧ କରିବୁ । ମୁଁ ତତେ ନିର୍ବାସିତ କରୁଛି । ବାହରିଯା, ବାହାରିଯା ମୋ ରାଜ୍ୟରୁ ।

ବିଭୀଷଣ : ଯାହା ଆପଣଙ୍କର ଇଚ୍ଛା, କିନ୍ତୁ ମନେରଖନ୍ତୁ ଏହାର ଫଳ ଆପଣଙ୍କୁ ଦିନେ ଭୋଗ କରିବାକୁ ପଡିବ । (ପ୍ରସ୍ଥାନ)

ଦୂତ : ମହାରାଜଙ୍କ ଜୟ ହେଉ ।

ରାବଣ : କି ସମ୍ବାଦ ଦୂତ ?

ଦୂତ : ରଘୁପତି ରାମଚନ୍ଦ୍ର ସ୍ୱର୍ଣ୍ଣଲଙ୍କା ଆକ୍ରମଣ କରିଛନ୍ତି ।

ରାବଣ : ଏତେ ସ୍ପର୍ଦ୍ଧା ତାର ? ଯାଅ, ଯୁଦ୍ଧର ଆୟୋଜନ କର ।

ଦୂତ : ଯଥା ଆଜ୍ଞା ମହାରାଜା ।

(ଦୂତର ପ୍ରସ୍ଥାନ, ରାମଙ୍କର ପ୍ରବେଶ, ରାମ ଓ ରାବଣ ମୁହାମୁହିଁ ହୋଇ ଛିଡା ହୋଇଛନ୍ତି (ଯୁଦ୍ଧ) (ରାବଣର ମରଣ ରାମଙ୍କର ସୀତା ଗ୍ରହଣ ।)

## ଦୃଶ୍ୟ-୪

(ଧୋବା ଘରର ଦୃଶ୍ୟ । ଧୋବାର ପ୍ରବେଶ)

ଧୋବା : ସକାଳ ପହରରୁ ଏ ପର୍ଯ୍ୟନ୍ତ ଲୁଗା କଚା ଚାଲିଛି ଯେ ବେଳ ଆସି ମୁଣ୍ଡ ଉପରେ ହେଲାଣି । କ'ଣ କରିବା ଏ ଚମ୍ପାବତୀ ! ଚମ୍ପାବତୀ ! ସିଏ କଣ ଶୁଣିବ କି ? ଏ ଚମ୍ପି ! ଚମ୍ପି ! ଆରେ ଆରେ ହାଣ୍ଡି କୁଣ୍ଡେଇ କ'ଣ ଗଡି ପଡିଛି, ଆଜିବି ସକାଳେ ବୋପା ଘରୁ ଆସିନି ବୋଧହୁଏ । ଆମ ଚମ୍ପିକି ଦେଖିଛନ୍ତି କି ? ମୁଁ ଜଣେ ପରା ଜାଣେ ସିଏ ଆଜି ବି ବୋପା ଘରୁ ଆସି ନଥିବ । ମୁଁ କ'ଣ ମାହାଳିଆ କୁ ତା ଉପରେ ଚିଡେକି । ଶଳାଦିନେ କହି ଯାଇଛି ଯେ ଚାରି ଦିନ ହେବ ବୋପା ଘରେ ବସିଛି । ମୁଁ ରଜାଘରକୁ ଲୁଗା କେତେବେଳ ନେଇକି ଯିବି ? ରୋଷେଇ କରି କେତେବେଳେ ଖାଇବି ? ହଇହୋ ମରଦ ଲୋକ ହାଣ୍ଡି କରେଇ ଧରି ରୋଷେଇ କରିବ, ମାଇକିନିଆ ରାଜ ରାଣି ହେଇ ଦୋଳି ଝୁଲିବ । ଧନ୍ୟ ଧନ୍ୟ ହେ ପିତୃଦେବ ଦେଖ ଦେଖ ସ୍ୱର୍ଗରେ ଥାଇ ଦେଖ । ଭଲ ମାଇକିନିଆଟା ମୋ ହାତରେ ଛନ୍ଦି ଦେଇଗଲ ଯେ ମାସରେ ୧୫ ଦିନ ସେ ବୋପା ଘରେ ରହିବ । ଚୁଲି ଫୁଙ୍କି, ଫୁଙ୍କି ଏଠି ମୋ ଜୀବନ ଯାଉଛି ।

(ରୋଷେଇ କରୁଛି) ଆସୁ ସିଏ ଆଜି ତାର ହାତଗୋଡ ଭାଙ୍ଗି ଚୁନା କରି ନ ଦେଇଛି ତା'ହେଲେ ମୁଁ ବୋପାର ପୁଅ ନୁହଁ ।

ଧୋବଣି : (ପ୍ରବେଶ କରିଛି) କ'ଣ ରୋଷେଇ ବାସ ସରିଲାଣି ନା ନାହିଁ । ଭାରି ଭୋକ କଲାଣି ।

ଧୋବା : ହଁ ଆସିଗଲ କି ମହାରାଣୀ ? ଏଠିତ ଥୁଆ ହୋଇଚି ଗେଫିବାକୁ ଆସିଗଲା କହିଲା କଣ ନା ରୋଷେଇ ସରିଲାଣି ଭାରି ଭୋକ କଲାଣି (ତାସ୍ଛଲ୍ୟ କରି) ସିଆଡେ କୁଆଡେ ଯାଉଛୁ ? ସିଆଡେ କୁଆଡେ ? ଯୋଉଠୁ ଆସିଛୁ ସିଆଡକୁ ପଳା

ଧୋବଣି : କାହିଁକି କାହିଁକି ଯିବି ଏଇଟା କ'ଣ ତୋ ଘର ? ଏଇଟା ମୋ ଘର ।

ଧୋବା ଆହା ହା ମରିଯାଉ ଥାଏ ଲୋ । କୋଉଠି ଥଲ ମ ମଲ୍ଲୀ । ମୋ ଘର ? ତୁ ଏପର୍ଯ୍ୟନ୍ତ କୋଉଠି ଥିଲୁ । ଯୋଉଠୁ ଆସିଛୁ ସେଇଠିକୁ ସହଳ ସହଳ ପଳା ।

ଧୋବଣି : ଯିବିନି ।

ଧୋବା : ଯିବୁନି ।

ଧୋବା : ମୋ କାନିରେ ଆଜି ଗଣ୍ଠି ପଡ଼ିଲା ମୁ ଯଦି ତୋତେ ଘରୁ ବାହାର ନ କରିଛି ମୁଁ ଦଳେଇ ସେଠୀ ପୁଅ ନୁହେଁ । ବୋପା ଯେମିତି ଝିଅ ସେମିତି ।

ଧୋବଣି : ହେଇଚି ମୁଁ ଭଲରେ କହିଦେଉଛି ମୋ ବୋପା ନା ଧରନି ।

ଧୋବା : ଥରେ ନୁହେଁ ଥରେ ନୁହେଁ ବାରମ୍ୱାର କହିବି ଶହେ ଥର କହିବି ତୋ ବୋପାଟା ଯେମିତି ତୁଟା ସେମିତି ।

ଧୋବଣି : ମୁଁ ବି କହିବି ତୋ ବୋପାଟା ଯେମିତି ତୁ ବାଡିପଡାଟା ସେମିତି କାରେ ।

ଧୋବା : ଆରେ ହେ ମାଇକିନିଆଟା ମୋ ମୁହଁରେ ଜବାବ ଦେଉଛି । ବଜାତ ମାଇକିନିଆଟା । ବାଡ଼ି କୁଆଡେ ଗଲା ଠିକ୍ ସମୟରେ ସେଇଟା ମିଳିବ ନାହିଁ (ବାଡି ଖୋଜିଛି ତାକୁ ମାରିଛି)

ଧୋବଣି : ମରିଗଲି ଲୋ । ଏ ବାଡି ପଡା ମୋତେ ମାରିଦେଲା ଲୋ । ମୁଁ କ'ଣ କରିବି ।

ଧୋବା : ମରିଯା, ମରିଯା, ମରିଗଲେ ନେଇକି ନଈରେ ଭସେଇ ଦେଇ ଆସିବି । ମାଇକିନିଆ କ'ଣ ଅପୂର୍ବ ହୋଇଛନ୍ତି ନା କ'ଣ ମ ? ଆଜି ତୁ ମରିଗଲେ କାଲି ସକାଳେ ମୁଁ ଆଉ ଗୋଟେ ଆଣି ବାହା ହେବି । (ଧୋବଣିର ଚିତ୍କାର)

ଧୋବଣି : ତୋର ତ ଭାରି ସାହାସ ହେଲାଣି । ମୋର କ'ଣ ଦୋଷ ଥିଲା ଯେ । ବାପଘରେ କ'ଣ କିଏ , ଦିନେ ଦୁଇଦିନ ରହୁନାହାଁନ୍ତି । କାଲି ଆସିବି

ବୋଲି କହିଥିଲି, ଦିନେ ଡେରି ହୋଇଗଲା ବୋଲି ଏ ବାଡିପଡା ମୋତେ ଘରୁ ବାହାର କରିଦେଉଛି । ହେଇଟି ଯାଉଛି ?

ଧୋବା : ଯାଉନୁ ଯା କିଏ ଅଟକାଉଛି ବା ?

ଧୋବା : ଧୋବା ସାହିରୁ ଗୋଟେ ମାଇକିନିଆ ବାହାରିଯିବ ଏଇଟା କଣ ନୂଆ କଥାନା ଏଇଟା ପୋଥିରେ ଲେଖା ହୋଇକି ରହିବ ।

ଧୋବଣି : ଯିବି.... ?

ଧୋବା : ଯାଆ ।

ଧୋବଣି : ଯାଉଛି ।

ଧୋବା ନାଇଁ ନାଇଁ ରହ ରୋଷେଇ କରି ଦେବି ଖାଇକରି ଯିବୁ ।

ଧୋବଣି : ଯାଉଛି । ରାଜାଙ୍କ ଆଗେରେ ଫେରାଦ ହେବି ।

ଧୋବା ଯାଉନୁ ଯା, ମୁଁ କ'ଣ ତତେ ଅଟକେଇଛି, ରାଜା ମୋର କ'ଣ କରିବେ କି, ଦେଖିବା ସେ କ'ଣ ବିଋର କରୁଛନ୍ତି ।

ଧୋବଣି : ସିଏ ବିଋର ନ କରିବେ କିଆଁ । ରାବଣ ଭଳିଆ ରାକ୍ଷସ ତାଙ୍କ ସ୍ତ୍ରୀକୁ ନେଇଗଲା । ସେତ ପୁଣି ସତୀହେଇ ଆସି ରାଜରାଣୀ ହେଲେ ? ମୁଁ ତାଙ୍କ ସ୍ତ୍ରୀ ଭଳିଆ ଆଉ କାହାସାଙ୍ଗରେ ପଳେଇ ନଥିଲି ନା- ମୁଁ ତ ମୋ ବୋପା ଘରକୁ ଯାଇଥିଲି । ଦେଖିବି ସେ କେମିତି ମୋର ନ୍ୟାୟ କରିବେ ନାହିଁ ?

## ପଞ୍ଚମ ଦୃଶ୍ୟ

(ରାମଙ୍କର ରାଜପ୍ରାସାଦ)

ରାମ : ଆହାଃ ବନ୍ଦ କର ! (ଲକ୍ଷ୍ମଣକୁ ଡାକିଛନ୍ତି) ଲକ୍ଷ୍ମଣ, ଲକ୍ଷ୍ମଣ !

ଲକ୍ଷ୍ମଣ : ଭ୍ରାତା ।

ରାମ : ପ୍ରଜାମାନଙ୍କର ମଙ୍ଗଳ ନିମନ୍ତେ ରାଜର୍ଷି ଜନକଙ୍କ ସୃଷ୍ଟି ନୂତନ ଜ୍ଞାନ କୌଶଳ ଆଜି ମୋ ଅନ୍ତଃପୁରେ ବନ୍ଦୀ ! କିନ୍ତୁ ଲକ୍ଷ୍ମଣ ଯଦି ପ୍ରଜାମାନଙ୍କ ଭିତରେ ତାର ପ୍ରଚାର ଓ ପ୍ରସାର ହେଇ ନ ପାରିଲା ସୃଷ୍ଟିରେ ସାର୍ଥକତା କିଛି ରହିବ ନାହିଁ ଲକ୍ଷ୍ମଣ । ତେଣୁ ଲୋକ ମୁଖୁ ଅପନିନ୍ଦା ଶୁଣିବା ପୂର୍ବରୁ ବିତରଣ କର ତା'ରେ ଭାଗିରଥୀ ତିରେ !

ଲକ୍ଷ୍ମଣ : ଭ୍ରାତା । ଏ କିନ୍ତୁ ଅନ୍ୟାୟ ଭ୍ରାତା । ଜ୍ଞାନ କୌଶଳକୁ ସାଧାରଣ ଲୋକ ଭିତରେ ବିତରଣ କଲେ ସେମାନେ ଏହାର ମହତ୍ୱ ବୁଝିବେ ନାହିଁ

କିନ୍ତୁ ଏହା ଯଦି ଆପଣଙ୍କର ଇଚ୍ଛା ହୁଏ ଏଥିରେ ମୋର କିଛି କହିବାର ନାହିଁ ।

ରାମ : ପ୍ରଜା ମାନଙ୍କର ମଙ୍ଗଳ କାମନା ରାଜାର ପ୍ରଥମ କର୍ତ୍ତବ୍ୟ । ସେଇଥିପାଇଁ ଜନକ ସୃଷ୍ଟି କରିଥିଲେ ତାକୁ ଏଇ ପ୍ରଜାମାନଙ୍କର ମଙ୍ଗଳ ନିମନ୍ତେ । ଯଥା ଶୀଘ୍ର ରାଜାଆଜ୍ଞା ପାଳନ କର ?

ଲକ୍ଷ୍ମଣ : ଯଥା ଆଜ୍ଞା ।

(ମ୍ୟୁଜିକ୍ ଭିତରେ ଅଭିନେତାମାନେ ରଥ ତିଆରି କରି ଲକ୍ଷ୍ମଣ ସୀତାଙ୍କୁ ଧରି ଭାଗୀରଥି କୂଳକୁ ବିସର୍ଜନ ପାଇଁ ନେଇଯିବେ ।)

ଗୀତ

ଭାଗୀରଥି କୂଳେ ଲକ୍ଷ୍ମଣ ଯେ କାଳେ
ବୈଦେହୀ ବିସର୍ଜି ଗଲେ
ବ୍ୟାପିଥିଲା ଖରା । ସସାଗରା ଧରା
ନିର୍ମଳ ଅମ୍ବର ତଳେ ।୧ ।
ରାଘବ ବଧୂର ନିର୍ଯ୍ୟାତନା ସୁର-
ପୁରକୁ ଦିଶିଲେ ଲଜ୍ଜା
ହେବ ବୋଲି ଦିବା ନାଥଙ୍କ ସେ କିବା
ଶୁଭ୍ର ଯବନିକା ସଜ୍ଜା ।୨ ।
(ଦୃଶ୍ୟାନ୍ତର)

## ଦୃଶ୍ୟ-୬

(ଲବ କୁଶ ପ୍ରବେଶ କରିଛନ୍ତି, ବାଲ୍ମୀକି ଆଶ୍ରମ)

ଲବକୁଶ : ପ୍ରଣାମ ଗୁରୁଦେବ ।

ବାଲ୍ମୀକି : ତଥାସ୍ତୁ ! ଲବ, କୁଶ, ଉପବେଶନ କର । ଆଜି ତୁମର ବିଦ୍ୟାଆରମ୍ଭ କରିବା (ହାତ ଧରି ଭୂଇଁରେ ଗୋଲ ବୁଲାଇବା ବେଳେ ଶିଖେଇ ଦେଉଛନ୍ତି) ଓଁ ବ୍ରହ୍ମା ବିଷ୍ଣୁ ମହେଶ୍ୱର ।

ଲବକୁଶ : ଓଁ ବ୍ରହ୍ମା ବିଷ୍ଣୁ ମହେଶ୍ୱର (ଲବକୁଶ ନିଜେ ଶିଖିବାକୁ ଚେଷ୍ଟା କରିଛନ୍ତି ଓ ତିନିଥର ସେଇଭଳି ଉଚ୍ଚାରଣ କରିଛନ୍ତି) (ଆଶୀର୍ବାଦ କରିଛନ୍ତି)

ଗୁରୁଦେବ : ଲବକୁଶ !

ଲବକୁଶ : ଗୁରୁଦେବ !

ଗୁରୁଦେବ : ଚାଲ ଧନୁବିଦ୍ୟା ଶିକ୍ଷା କରିବା ।

ଗରୁଦେବ : ଓଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ଓଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର (ହାତ ଧରି ଶିଖେଇ ଦେଇଛନ୍ତି) (ଲବକୁଶ ଶର ମାରିଛନ୍ତି ଗୁରୁ ଆନନ୍ଦନରେ) ବାଃ ଚମତ୍କାର ।

ଗୁରୁଦେବ : ଲବକୁଶ - ଚାଲ ଏଥର ରାମାୟଣ ପାଠ କରିବା ।

ଲବକୁଶ : ଜୟ ଜୟ ସଦାଶିବ ମଙ୍ଗଳ ଦାୟକ

ଜୟ ଜୟ ସଦାଶିବ ପାର୍ବତୀ ନାୟକ

ସ୍ମରହର ମୃତ୍ୟୁଞ୍ଜୟ କୈଳାଶ ବିହାରୀ

ଭୂତେଶ୍ୱର ଦିଗବାସ ବିଶ୍ୱରୂପଧାରୀ

ଶିବପ୍ରଦ ହେତୁ ଶିବ ନାମ ଯେ ତୁମର

ସୃଷ୍ଟି ସଂହାରକ ହେତୁ ତୁମ୍ଭ ନାମ ହର ।

(ଗୁରୁଦେବ ଆଶୀର୍ବାଦ କରିଛନ୍ତି)

ଗୁରୁଦେବ : ଆୟୁଷ୍ମାନ ଭବ ।

(ଦୃଶ୍ୟାନ୍ତର)

## ଦୃଶ୍ୟ-୭

(ରାଜ ଭବନର ଦୃଶ୍ୟ ସେଇ ଗୀତ ଗାଇ ଗାଇ ଲବକୁଶ ଓ ବାଲ୍ମୀକିଙ୍କ ପ୍ରବେଶ)

ରାମ : ସୁନ୍ଦର ! ଅତି ସୁନ୍ଦର ! କିନ୍ତୁ ମହର୍ଷି କିଏ ଏଇ ବାଳକ ଦ୍ୱୟ ।

ଗୁରୁଦେବ : ହେ ରାଜା ରାମଚନ୍ଦ୍ର ତୁମେ ଯେଉଁ ସୀତାଙ୍କୁ ଭାଗୀରଥି କୂଳେ ବିସର୍ଜନ କରିଥିଲ ଇଏ ତାଙ୍କରି ସୃଷ୍ଟି । ଏ ତାଙ୍କର ସୃଷ୍ଟ ନୂତନ ଜ୍ଞାନ କୌଶଳ ଦ୍ୱୟ । ଲବ କୁଶ । ତୁମରି ସୃଷ୍ଟି ।

ରାମ : ନୂତନ ଜ୍ଞାନ କୌଶଳ ! ମୋରି ସୃଷ୍ଟି ।

ଗୁରୁଦେବ : ହିଁ ତୁମର ସୃଷ୍ଟି ।

ପ୍ରଜା : ଆମେ ସୀତା ଚାହୁଁ । ସୀତା, ସୀତା ସୀତା ।

ବାଲ୍ମିକୀ : କୁହ ରାଜା ରାମଚନ୍ଦ୍ର, କ'ଣ ତୁମର ଇଚ୍ଛା ?

ରାମଚନ୍ଦ୍ର : ମହର୍ଷି ଆପଣ ଜାଣନ୍ତି ! ପ୍ରଜାଙ୍କର ଇଚ୍ଛା ନିକଟରେ ମୁଁ ମୋର ସମସ୍ତ ଇଚ୍ଛାକୁ ଉତ୍ସର୍ଗ କରିଦେଇଛି । ତେବେ ମୋର ଇଚ୍ଛା । ସୀତାଙ୍କୁ ଗ୍ରହଣ କରିବା ପୂର୍ବରୁ ମୁଁ ଚାହେଁ ଆଉ ଥରେ ଅଗ୍ନିରେ ତା'ର ଉତ୍କର୍ଷତା ପରୀକ୍ଷା କରିନେବା ପାଇଁ । ସୀତାଙ୍କୁ ଅଗ୍ନି ପରୀକ୍ଷା ଦେବାକୁ ପଡିବ ।

ସୀତା : (ରାମଚନ୍ଦ୍ରଙ୍କୁ ପ୍ରଣାମ କରି) ହେ ମହର୍ଷି ! ତାର କିଛି ପ୍ରୟୋଜନ

ନାହିଁ । ପୃଥିବୀ ପୃଷ୍ଠରେ ଏ ନୂତନ ଜ୍ଞାନ କୌଶଳ ଦ୍ୱୟର ଆବିର୍ଭାବ ପରେ ଏ ପୁରାତନ ଜ୍ଞାନ କୌଶଳରେ ଆଉ କିଛି ପ୍ରୟୋଜନ ନାହିଁ ।

ସୀତା : ହେ ମେଦିନୀ ! ହେ ଜନନୀ ! ତୋ'ରି କୋଳରୁ ଉଦ୍‌ଭବ ହୋଇ ମୁଁ ତୋ'ରି କୋଳରେ ଆଶ୍ରୟ ନେବାକୁ ଚାହେଁ ମା । ମୋତେ ଆଶ୍ରୟ ଦେ ମା' । ମୋତେ ଆଶ୍ରୟ ଦେ-

(ସୀତାଙ୍କର ପାତାଳ ପ୍ରବେଶ) (ଅଭିନେତାମାନେ (ପ୍ରଜାମାନେ) ଗୋଲାକାର କରି ଛିଡା ହୋଇଯିବେ ସୀତା ବସିଯିବେ ସୀତାଙ୍କର ଉତ୍ତରୀୟ ରାମଙ୍କ ହାତରେ ରହିଯିବ ।) (ଏମିତି ହେବ ଯେ ସୀତା ଧିରେ ଧିରେ ବସୁଥିବେ ପ୍ରଜାମାନେ (Chorus) ଧିରେ ଧିରେ ଉଠୁଥିବେ । ରାମଙ୍କ ହାତରେ ଉତ୍ତରୀୟ ରହିଯିବ । ତାପରେ ସମସ୍ତେ ଏକା ସାଥିରେ ବସି ପଡିବେ ।)

ରାମ : ସୀତା....... ।

ସୂତ୍ରଧର : (ପ୍ରବେଶ) ହଁ ଆଜ୍ଞା ! କାମନାର ସେଇ ଅସରନ୍ତି ପାହାଚର ସୋପାନରେ ଚଢୁଚଢୁ ରାମାୟଣ ଯୁଗର ଧ୍ୱଂସ ଏହି ସାମଜ ଦେଖି ସାରିଛି ସୀତାର ପାତାଳ ପ୍ରବେଶ ପରେ ! ଆଉ ଏକ ନାରୀ କାମନାର ଜ୍ୱଳନ୍ତ ଅଗ୍ନିରେ ଧ୍ୱଂସ ହେବା ପାଇଁ ମହାଭାରତ ସଭ୍ୟତାରେ ଜନ୍ମ ନେଇଛି ।

(ଓଁ......... କରି ସମସ୍ତେ ପ୍ରସ୍ଥାନ)

## ଦୃଶ୍ୟ-୮

(ଦ୍ରୁପଦଙ୍କ ରାଜଦରାବରର ଦୃଶ୍ୟ)

(ଚିନ୍ତିତ ମନରେ ଦ୍ରୁପଦ ରଜା ବସିଛନ୍ତି । କୃଷ୍ଣଙ୍କର ପ୍ରବେଶ)

କୃଷ୍ଣ : କି ଆଶ୍ଚର୍ଯ୍ୟ ! ମହାରାଜା ଦ୍ରୁପଦ ଆଜି ଚିନ୍ତିତ କିମ୍ପାଇଁ ?

ଦ୍ରୁପଦ : ସ୍ୱାଗତ ସ୍ୱାଗତ ହେ ଅନ୍ତର୍ଯ୍ୟାମି କୃଷ୍ଣ ! ଜାଣନା କି ତୁମ୍ଭେ ମୋର ଚିନ୍ତାର କାରଣ ?

କୃଷ୍ଣ : ଜାଣିଛି । ଅନ୍ୟାୟକୁ ପ୍ରତିରୋଧ କରିବାର ଚିନ୍ତା ଆଜି ସମସ୍ତଙ୍କୁ ମ୍ରିୟମାଣ କରିଛି ।

ଦ୍ରୁପଦ : ଅଥଚ ନିରବ ତୁମ୍ଭେ ନିଶ୍ଚିନ୍ତ ଭାବରେ ରହିଛି ନିଚେଷ୍ଟ ?

କୃଷ୍ଣ : କି ଅବା ଉପାୟ ଅଛି ମୋର ?

ଦ୍ରୁପଦ : ନିରୁପାୟ ତୁମେ ? ବାଲ୍ୟକାଳେ ଯିଏ ଦିନେ ବଧ କରିଥିଲା କଂସ ଓ ପୁତନା । ଆଜ ସିଏ ନିରୁପାୟ, କି ଆଶ୍ଚର୍ଯ୍ୟ ।

କୃଷ୍ଣ : ମହାରାଜ ! ବାଲ୍ୟକାଳେ ବାଲ୍ୟଲୀଳା ହୋଇଛି ସମାପ୍ତ । ଆଜି ମୁହିଁ ଶକ୍ତିହୀନ, ନିସ୍ୱ, ପ୍ରେରଣାଦାୟିନୀ ଶକ୍ତି ପ୍ରୟୋଜନ ମୋର ।

ଦ୍ରୁପଦ : ତେବେ, ଶ୍ରୀରାଧାଙ୍କୁ କରହେ ସ୍ମରଣ ।

(ନେପଥ୍ୟରୁ ବଂଶୀସ୍ୱର)

କୃଷ୍ଣ : ଆଃ - ସେ ଅପୂର୍ବ ନାମ କରିଲେ ସ୍ମରଣ, ମନ ମୋର ହଜିଯାଏ ଆକାଶର ନୀଳିମାରେ, ତନୁମନ ମୋର ରୋମାଞ୍ଚିତ ହୋଇଉଠେ ସାତ୍ତ୍ୱିକ ଭାବନାର ଆବେଗରେ । ଆତ୍ମାମୋର ପୁଲକିତ ହୋଇଉଠେ, ପରମାତ୍ମା - ପାଇଁ । କିନ୍ତୁ ମହାରାଜ, ତନ୍ମୟର ବେଳ ନୁହେଁ ଇଏ, ପ୍ରୟୋଜନ ଏବେ ମୋର ମହିଷା ମର୍ଦ୍ଦିନୀ କାତ୍ୟାୟନୀ ଶକ୍ତି.... ତାଙ୍କୁ ଆବାହନ କରିବାକୁ ହେବ....

ଦ୍ରୁପଦ : କିନ୍ତୁ କିପରି ?

କୃଷ୍ଣ : ସେଇଥିପାଇଁ ତ ମୋର ଆଗମନ, ଆପଣ ଯଜ୍ଞର ଆୟୋଜନ କରନ୍ତୁ -

ଦ୍ରୁପଦ : ଯଜ୍ଞର ଆୟୋଜନ କର (ଯଜ୍ଞମନ୍ତ୍ର ଓ ଯଜ୍ଞ) (ମଞ୍ଚରେ Up Centre ରେ ପୂର୍ବରୁ ବେଦୀର ଚାରିକଡରେ ଚାରିଜଣ ବ୍ରାହ୍ମଣ ବସି ଯଜ୍ଞ କରିବେ Light ର Technique ରେ ନିଆଁର ଶିଖା ଜଳିବ)

*ଓଁ ଅଗ୍ନୟେନମଃ, ଓଁ ଇନ୍ଦ୍ରାଦି ପଞ୍ଚଦେବତାୟେ ନମଃ, ଓଁ ସର୍ବଦେବେଭ୍ୟଃ ନମଃ ।*

କୃଷ୍ଣ : ଏଥର ପୂର୍ଣ୍ଣାହୂତି ଦିଅନ୍ତୁ ।

(ପୂର୍ଣ୍ଣାହୂତି ଓ ଯଜ୍ଞଶିଖା ମଧ୍ୟରୁ ଦ୍ରୌପଦିଙ୍କର ଆର୍ବିଭାବ

ବ୍ରାହ୍ମଣମାନେ : ଓଁ...................

ଦ୍ରୁପଦ : ଏ ଯେ ଶ୍ୟାମାଙ୍ଗିନୀ ନାରୀ.........

କୃଷ୍ଣ : କୃଷ୍ଣା, ଦ୍ରୁପଦ ନନ୍ଦିନୀ କୃଷ୍ଣା, ନାରୀ ବୋଲି ଜ୍ଞାନ କର ନାହିଁ ମହାରାଜ । ରାମାୟଣ ଯୁଗର ସୀତା ଆଉ ଏ ମହାଭାରତୀୟ ସଭ୍ୟତାର ଦ୍ରୌପଦୀ, ଦୁହିଁଙ୍କର ଉଦ୍ଦେଶ୍ୟ ଏକ ଓ ଅଭିନ୍ନ ।

ଦ୍ରୁପଦ : କିନ୍ତୁ ସେଥିଲେ ସୁବର୍ଣ୍ଣ ସୀତା ଆଉ ଏ ଯେ କୃଷ୍ଣାଙ୍ଗୀ ଦ୍ରୌପଦୀ......

କୃଷ୍ଣ : ପାର୍ଥକ୍ୟ କେବଳ ରଙ୍ଗରେ, ବର୍ଣ୍ଣରେ, କାରଣ କଣ ଜାଣନ୍ତି ମହାରାଜ ?
ଦ୍ରୁପଦ : କୁହନ୍ତୁ ବୁଝାଇ.-
କୃଷ୍ଣ : ରାମାୟଣରେ ସୀତାଙ୍କ ଉଦ୍ଭବ ହୋଇଥିଲା ମହାରାଜ ଜନକଙ୍କର କର୍ମ ଓ ତ୍ୟାଗରୁ ତେଣୁ ସେ ସୁବର୍ଣ୍ଣା ।
ଦ୍ରୁପଦ : ଆଉ ଦ୍ରୌପଦି..... ?
କୃଷ୍ଣ : ଆଉ ମହାଭାରତୀୟ ଦ୍ରୌପଦିଙ୍କର ଉଦ୍ଭବ ହୋଇଛି ମହାରାଜ ଦ୍ରୁପଦଙ୍କ କାମନା ଓ ଭୋଗ ଲାଳସାରୁ, ତେଣୁ ସେ କୃଷ୍ଣାଙ୍ଗୀ ।
ଦ୍ରୁପଦ : କି ଆଶ୍ଚର୍ଯ୍ୟ....
କୃଷ୍ଣ ତେଣୁ ଜାଣି ରଖନ୍ତୁ ମହାରାଜ କାମନା ଓ ବାସନାରେ ମଦମତ୍ତ ହୋଇ ଯିଏ ବା ଚାହିଁବ ତାକୁ ଭୋଗ କରିବାକୁ ନିଜ ବାହୁବଳେ ଅନ୍ୟାୟ ଅର୍ଜିତ କଳାଧନ ଭାବି । ଧ୍ୱଂସ ହେବ ସିଏ ପତଙ୍ଗ ପ୍ରମାଣେ ।
ଦ୍ରୁପଦ : ସାଧୁ... ସାଧୁ... ଧନ୍ୟ ତୁମର ଲୀଳା ।

### ଦୃଶ୍ୟ-୯

(ଦ୍ରୌପଦୀ ବସ୍ତ୍ର ହରଣ ଦୃଶ୍ୟର ଆୟୋଜନ)

(କୌରବ ଶିବିର ପଶାଖେଳ ଦୃଶ୍ୟ)

ଦୁର୍ଯ୍ୟୋଧନ: ହାଃ..... ହାଃ.... ହାଃ..... ପାଞ୍ଚ ତିନି ଆଠ ।
କୋରସ : ହାଃ..ହାଃ.... (ପଶାପାଲି ଖେଳ)
ଦୁର୍ଯ୍ୟୋଧନ : ମାତୁଳ ହସ୍ତିନା, ମାତୁଳ (ଶକୁନି ପଶାଖେଳିଲେ) ଇନ୍ଦ୍ରପ୍ରସ୍ଥ ଏବେ ହୋଇଲା ଆମ୍ଭର । (ସମସ୍ତେ ହସ ହସ, ପାଣ୍ଡବ ମାନେ ମୁଣ୍ଡ ତଳକୁ କଲେ ।)
ଶକୁନି : (ଡାକିଲେ) ପ..ବାର....
ଦୁର୍ଯ୍ୟୋଧନ : କୁହ ତୁମ ପରବର୍ତ୍ତୀ ପଣ କଣ ?
ଯୁଧିଷ୍ଠିର : ରାଜ୍ୟ ଓ ରାଜ ସିହାଂସନ (ପଶାଖେଳ ଓ ହସ)
ଶକୁନି : (ଡାକିଲେ ଓ ଖେଳିଲେ) ଛଅ ତିନି ନଅ.... ହସିଲେ
ଦୁର୍ଯ୍ୟୋଧନ : ରାଜ୍ୟ ଓ ରାଜ ସିହାଂସନ ମଧ୍ୟ ହୋଇଲା ଆମ୍ଭର ଧର୍ମରାଜ ଯୁଧିଷ୍ଠିର । କ'ଣ ବା ରଖିବ ଏବେ ପଣ ।
ଶକୁନି : ଅଛି ଅଛି ପାଞ୍ଚାଳି ଅଛି ଭଣଜା । (ପାଣ୍ଡବମାନେ ପ୍ରତିବାଦ କଲେ)
ଯୁଧିଷ୍ଠିର : ଠିକ୍ ଅଛି ପାଞ୍ଚାଳୀ......

ଦୁର୍ଯ୍ୟୋଧନ: ନିଅ ମାତୁଳ ପଶାକାଠି ।

ଶକୁନି : ଦଶ ପ ବାର .... (ହସ) ଏଥର ପାଞ୍ଚାଳୀ ଆମ ହସ୍ତଗତ ।

ଦୁର୍ଯ୍ୟୋଧନ : ଯାଅ ଦୁଃଶାସନ ପାଞ୍ଚାଳିକୁ ଅବିଳମ୍ବେ ଘେନି ଆସ କୁରୁ ରାଜସଭାମଧ୍ୟେ । (ଦୁଃଶାସନର ପ୍ରସ୍ଥାନ ଓ ଦ୍ରୌପଦୀ ସହ ପ୍ରବେଶ)

ଦୁର୍ଯ୍ୟୋଧନ : ଦୁଃଶାସନ । ଅବିଳମ୍ବେ ବିବସ୍ତ୍ର କର ପାଞ୍ଚାଳି ମୋ ସମ୍ମୁଖରେ ।

ଧୃତରାଷ୍ଟ୍ର : ପୁତ୍ର ।

ଦୁଃଶାସନ : ଆପଣ ନିରବ ରୁହନ୍ତୁ ପିତାଶ୍ରୀ

ଦୁଃଶାସନ : ହାଃ..... ହାଃ....... ହାଃ......(ବସ୍ତ୍ରହୀନ କରୁ କରୁ)

ଦ୍ରୌପଦୀ : ଚୁପକର ମୁର୍ଖ, ମୁଁ ତୁମ ଉପାର୍ଜିତ ବସ୍ତୁ ନୁହେଁ ।

ଦୁଃଶାସନ : କିନ୍ତୁ କରାୟତ । ତୁମେ ଆଜି ଭୋଗ୍ୟା ହେବ କୌରବ ଯୁବରାଜଙ୍କର ।

ଦ୍ରୌପଦୀ : ରକ୍ଷାକର......... ହେ କେଶବ....... କୃଷ୍ଣାତବ ଆଜି କାମନାର ପଣ୍ୟ ଭାବେ ନିର୍ଯ୍ୟାତିତା କୁରୁ ସଭା ମଧ୍ୟେ ।

କୃଷ୍ଣ : (ଦେଖାଦେଲେ ଦୂରରୁ) (ଶଙ୍ଖଧ୍ୱନି) ଚିନ୍ତା କର ନାହିଁ କୃଷ୍ଣା.. କୁରୁ କ୍ଷେତ୍ରେ କୌରବର ଧ୍ୱଂସ ଲିପିବଦ୍ଧ ହେଲା ଆଜି ଏଇ ମୁହୁର୍ତ୍ତରେ... ।

## ଦୃଶ୍ୟ-୧୦

(ମହାଭାରତ ଯୁଦ୍ଧର ଦୃଶ୍ୟ ରଚନା)

ଧୃତରାଷ୍ଟ୍ର : ସଞ୍ଜୟ ସଞ୍ଜୟ ଘରିଆଡେ ନିସ୍ତବ୍ଧ କାହିଁକି ? ଦୁର୍ଯ୍ୟୋଧନ, ଯୁଧିଷ୍ଠିର ସମସ୍ତେ ନିରବ କାହିଁକି କୁହ କୁହ ସଞ୍ଜୟ ।

ସଞ୍ଜୟ : ମହାରାଜ କୃଷ୍ଣଙ୍କ ପ୍ରଦତ୍ତ ଦିବ୍ୟ ଚକ୍ଷୁରେ ମୁଁ ଯାହା ଦେଖି ପାରୁଛି, ଅବର୍ଣ୍ଣନୀୟ ମହାରାଜ । କିନ୍ତୁ.... ।

ଧୃତରାଷ୍ଟ୍ର : ମୁଁ ତୁମକୁ ଅଭୟ ଦେଉଛି ସଞ୍ଜୟ କୁହ କୁହ ଯୁଦ୍ଧକ୍ଷେତ୍ରରେ କ'ଣ ସବୁ ଘଟୁଛି । "ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବା ମାମକା ପାଣ୍ଡବାଶ୍ଚୈବ କିମ କୁର୍ବତ ସଞ୍ଜୟ ।"

ସଞ୍ଜୟ : କୁରୁକ୍ଷେତ୍ରେ ସମର ପ୍ରାଙ୍ଗଣରେ କୌରବ ଓ ପାଣ୍ଡବ ମାନଙ୍କର ସୈନ୍ୟମାନେ ଯୁଦ୍ଧପାଇଁ ମୁହାଁମୁହିଁ ହେଉଛନ୍ତି ମହାରାଜ । (ଯୁଦ୍ଧ ପାଇ ଆକ୍ରମଣ କୁରୁ ପାଣ୍ଡବ ଯୁଦ୍ଧ ମଧ୍ୟରେ ଅର୍ଜ୍ଜୁନଙ୍କ ରଥ ଆସି ପହଞ୍ଚିଲା ।)

ଅର୍ଜ୍ଜୁନ : ହେ ସଖା ! ତୁମେତ ଜାଣ ଦୁଇପକ୍ଷେ ମୋର ଆତ୍ମିୟ ସ୍ୱଜନ, ମୁଁ ମୋର ପିତାମହ, ଗୁରୁଦେବ, ଭ୍ରାତା ମାନଙ୍କର ହତ୍ୟା କରି ଆତ୍ମଘାତୀ

ହୋଇ ପାରିବି ନାହିଁ ସଖା । ମୋତେ କ୍ଷମା କର । ମୋତେ କ୍ଷମା କର ।

କୃଷ୍ଣ : ତୁମେ ଭୁଲ କରୁଛ ସଖା ! ଏ ସଂସାରରେ କିଏ କାହାର ଭ୍ରାତା କିଏ କାହାର ବନ୍ଧୁ, ଏ ସଂସାର ଗୋଟିଏ ମୃତ୍ୟୁ ଯଜ୍ଞଶାଳା । ପ୍ରତିଦିନ ପ୍ରତି ମୂହୁର୍ତ୍ତରେ ଲକ୍ଷ କୋଟି ଜୀବ ଏଠି ପଡୁଛନ୍ତି ଢଳି ମୃତ୍ୟୁକୋଳେ ସେଥିପାଇଁ ଦାୟୀ କିଏ ? ସେଥି ପାଇଁ କହୁଛି...

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।
ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି
ନୈନଂ ଦହତି ପାବକଃ
ନଃ ଚୈନଂ କ୍ଲେଦୟନ୍ତ୍ୟାପୋଃ
ନ ଶୋଷୟତି ମାରୁତଃ ।

କୃଷ୍ଣ : ହେ ପାର୍ଥ ଗାଣ୍ଡିବ ଉତ୍ତୋଳନ କରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ । (ଅର୍ଜ୍ଜୁନ ଗାଣ୍ଡିବ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ)

ଧୃତରାଷ୍ଟ୍ର : ତା ପରେ ତାପରେ କ'ଣ ହେଲା ? (ବିକଳ ହୋଇ)
ଯତ୍ର ଯୋଗେଶ୍ୱରଃ କୃଷ୍ଣୋ, ଯତ୍ର ପାର୍ଥୋ ଧନୁର୍ଦ୍ଧର
ତତ୍ର ଶ୍ରୀର୍ବିଜୟୋଭୂତିର୍ଧ୍ରୁବା ନୀତିର୍ମତିର୍ମମ । (୩ ଥର)

ଧୃତରାଷ୍ଟ୍ର : ସଞ୍ଜୟ (କୃଷ୍ଣଙ୍କର ଶଙ୍ଖ ବଜାଇବା ପରେ ପରେ କୌରବ ଓ ପାଣ୍ଡବ ମାନଙ୍କର ଯୁଦ୍ଧ ଆରମ୍ଭ ହେଲା, ଶେଷରେ କୌରବ ମାନେ ହାରିଗଲେ ପାଣ୍ଡବ ମାନେ ସେମାନଙ୍କ ପଛେ ପଛେ ଗଲେ)

ସୂତ୍ରଧର : ଆଜ୍ଞା ଏମିତି, ଏମିତି ଧ୍ୱଂସ ହୋଇଛି ଆଉ ଏକ ବିଶାଳ ସଭ୍ୟତା ଏ ମଣିଷ ତାକୁ ଖାତିର କରିନି ଯେମିତି ସେଥିରୁ ସେ କିଛି ବି ଶିକ୍ଷା ପାଇନି । ତାପରେ ପ୍ରଥମ ବିଶ୍ୱ ଯୁଦ୍ଧରେ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଧ୍ୱଂସର ତାଣ୍ଡବ ସୃଷ୍ଟିକରି ଏ ମଣିଷ ଆନନ୍ଦରେ ଉନ୍ମତ ହୋଇଛି । ତାର ଆତ୍ମାର ଡାକ ନିସ୍ତବ୍ଧ ହୋଇସାରିଛି । ସାମାଜିକ ସମ୍ପର୍କ ମାନବୀୟ ମୂଲ୍ୟବୋଧ ସବୁ ଆଜି ମଣିଷ ନିକଟରେ ମୂଲ୍ୟହୀନ ହୋଇସାରିବା

ପରେ

ଶ୍ଳୋକ : (କୋରସ ପ୍ରବେଶ
ସମସ୍ତେ ଗାଇଲେ)
ବୁଦ୍ଧଂ ଶରଣଂ ଗଛାମି
ସଂଘଂ ଶରଣଂ ଗଛାମି
ଧର୍ମଂ ଶରଣଂ ଗଛାମି

କୋରସ୍ ୧ : ସଂସାର ଦୁଃଖପୂର୍ଣ୍ଣ (କୋରସ୍)

ସମସ୍ତେ : ବୁଦ୍ଧଂ ଶରଣଂ ଗଛାମି

କୋରସ ୨ : ଦୁଃଖର କାରଣ କାମନା

ସମସ୍ତେ : ବୁଦ୍ଧଂ ଶରଣଂ ଗଛାମି

କୋରସ ୩ : କାମନାର ବିନାଶରେ ଦୁଃଖର ବିନାଶ ।

ସମସ୍ତେ : ବୁଦ୍ଧଂ ଶରଣଂ ଗଛାମି
ସଂଘଂ ଶରଣଂ ଗଛାମି
ଧର୍ମଂ ଶରଣଂ ଗଛାମି

ସୂତ୍ରଧର : କି କଥା ଆଜ୍ଞା କାମନାର ବିନାଶରେ ଦୁଃଖର ବିନାଶ । ଆଶାର ବିନାଶରେ ଜୀବନର ସତ୍ତା ଯେ ନାହିଁ; କି କଥା ଆଜ୍ଞା ଆଶା ହିଁ ତ ଜୀବନ, ଆରେ ମୁଁ କ'ଣ ଭୁଲ କହିଲି ?

କୋରସ : ବୁଦ୍ଧଂ ଶରଣଂ ଗଛାମି
ସଂଘଂ ଶରଣଂ ଗଛାମି
ଧର୍ମଂ ଶରଣଂ ଗଛାମି

(ମଞ୍ଚର ଅନ୍ୟପଟରେ ଡ଼ାଉନ ଲେଫ୍ଟ ଷ୍ଟେଜ୍‌ରେ ଜଣେ ନାରୀ ଦୁଇଜଣ ପୁରୁଷ ନିଜଆଡକୁ ଆକର୍ଷଣ କରୁଥିବାର ଦୃଶ୍ୟ ସେମାନଙ୍କ କଣ୍ଠରେ;- ଯାବତ୍ ଜୀବେତ୍ ସୁଖେନ ଜୀବେତ୍, ଋଣମ୍ କୃତ୍ୱା ଘୃତମ୍ ପିବେତ୍ (୩ ଥର)

(ସେତେବେଳେ ଜଣେ ନାରୀକୁ ଏକାଧିକ ପୁରୁଷ ଆକର୍ଷଣ କରିବାର ଦୃଶ୍ୟ)

ସୂତ୍ରଧର : ଛି, ଛି । ଇଏ ତ ଜୀବନ ନୁହେଁ ? ଖାଲି କାମନା ସର୍ବସ୍ୱ ଜୀବନ ତ ମଣିଷ ଜୀବନ ନୁହେଁ ଇଏ ପଶୁର ଜୀବନ । ଏ ଜୀବନ ନର୍କବାସ ସଙ୍ଗେ ସମାନ ।

(ପୁଣି ସେଇ ଶ୍ଳୋକ ବୋଲି ବୋଲି ପ୍ରସ୍ଥାନ)

ସୂତ୍ରଧର : ଛି ଛି ଆଜ୍ଞା । ଏ ଜୀବନ ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର । ଚାଲନ୍ତୁ ଦେଖିବା ଆଉ ଏକ ଜୀବନ ଦର୍ଶନ ।

(ଅନ୍ଧ ଗୀତ ଗାଇ ପ୍ରବେଶ)

ଗୀତ : ଓଲଟ ବୃକ୍ଷେ ଖେଳୁଛି ଲୋଟଣି ପାରାରେ....
ଓଲଟ ବୃକ୍ଷେ ଖେଳୁଛି ଲୋଟଣି ପାରା
ଅଠା କାଠି ପିଞ୍ଜରାରେ ନଦିଏ ଧରା.....

ସୂତ୍ରଧର : ଆଜ୍ଞା, ଏଇ ଜୀବନ ତତ୍ତ୍ୱ ଜ୍ଞାନର ଚରମ ଶିଖରରେ ପହଞ୍ଚିଛି । କହିଲେ ଦେଖି ଜ୍ଞାନର ଏଇ ତତ୍ତ୍ୱକୁ ନେଇ ମଣିଷ ବଞ୍ଚିବ କେମିତି ? ଆଜ୍ଞା ମଣିଷ ଚାହେଁ ପ୍ରେମ, ସ୍ନେହ, ଭକ୍ତି ଯେଉଁଠି ତ୍ୟାଗ ନାହିଁ ଅନ୍ୟ ପାଇଁ ସମର୍ପଣ ନାହିଁ ସେଇଠି ଜୀବନ କାହିଁ ।

କୋରସ : (ପ୍ରବେଶ) ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ, ହରେ ରାମ ହରେ ରାମ ରାମ ରାମ ହରେ ହରେ (ଗୀତ ଗାଇ ଗାଇ ସଂକୀର୍ତ୍ତନ ଦଳ ପ୍ରବେଶ, ତାଙ୍କ ପଛେ ପଛେ ସୂତ୍ରଧର ପ୍ରବେଶ, ବୁଲିଚି ଓ ପ୍ରସ୍ଥାନ)

ସୂତ୍ରଧର : ଦେଖିଲେ ତ ଆଉ ଏକ ଜୀବନ ଦର୍ଶନର ସଂଗୀତ ।

ତନ୍ତି : (ଗୀତ ଗାଇ ଗାଇ ତନ୍ତରେ ଲୁଗାବୁଣିବା)
(ଗୀତ) - ଥକା ମନ ଚାଲଯିବା, ଚକା ନୟନ ଦେଖିବା.. ଶଙ୍ଖନାଭି ମଣ୍ଡଳରେ ବେନି ନେତ୍ର ପଖାଳିବା । (ଗୀତ ଗାଇ ଲୁଗା ବିଣିଛି) ଆଲୋ ମା ରୂପା ଆଲୋ ସେ ଘରଟା ଭିତରେ କ'ଣ କରୁଛୁ ଆସୁନୁ କାହିଁକି ?

ସୂତ୍ରଧର : ଏ ତନ୍ତୀ ବୁଢାର ଜୀବନ ଯାତ୍ରା ତ ଆମରି କଥା କହୁଛି ଗରିବ, କର୍ମଜୀବୀ ମାନଙ୍କର ଜୀବନ ଗାଥା କହୁଛି ।

ରୂପା : (ପ୍ରବେଶ କରି) କ'ଣ ହେଲା ବା ?

ତନ୍ତି : (ଗୀତ ଗାଇ ଲୁଗା ବୁଣିଛି) ମାଲୋ ଟିକିଏ କଣ୍ଡା ବଳି ଦେବୁଟି......
ଦି'ଟା ଗାମୁଛା ବୁଣିଦେଲେ ହାଟକୁ ନେବି...

ରୂପା : ତୁ ବଳି ଦେଉନୁ, ମଣିଷ ଟିକିଏ ଶୋଇଥିଲା ଯେ ତୁ ଶୋଇ ବସେଇ ଦେବୁନି ।

ତନ୍ତି : ଆରେ ଶୋଇଲେ ପେଟ ପୁରିବ କିମିତି ? ଆମେପରା ଖଟିଲେ ଖାଇବୁ ଆଉ ବସିଲେ, ଶୋଇଲେ ଓପାସ ରହିବାକୁ ପଡିବ । ଦେ ମା ବଳିଦେ,

କ'ଣ କରିବା କହ ? ଗରିବ ଲୋକତ । ଦିଟା ଗାମୁଛା ହେଲେ ହାଟକୁ ନେଇକି ଯିବି । (ଅକାମନ ଚାଲଯିବା ଗୀତ ବୋଲି ଗାମୁଛା ବୁଣୁଛନ୍ତି)

ରୂପା : ନେ ! ବା... ଲୋ ହାଟକୁ ଗଲେ ତେଲ ଚାଉଳ, ଲୁଣ, ପନିପରିବା ଆଣିବୁ ଘରେ କିଛି ନାହିଁ । ନହେଲେ ମୋତେ ଭାତ ରାନ୍ଧିବାକୁ କହିବୁ ନାହିଁ ।

ବାପା : ହଁ ହଁ ସବୁ ଆଣିବି । ତୁ ଯାଇ ବ୍ୟାଗ, ତେଲ ବୋତଲ ସବୁ ସଜାଡି ରଖିବୁ ମୁଁ ଗଲାବେଳେ ହାଟକୁ ନେଇକି ଯିବି ।

ରୂପା : ଶୁଣ ଶୁଣ ବା ହାଟକୁ ଗଲେ ମୋ ପାଇଁ କୁଙ୍କୁମ ଆଣିବୁ । ନଖ ରଙ୍ଗ ଆଣିଦେବୁ ହେଲା ? ନହେଲେ ଆଉ କଣ୍ଡା ବଳିଦେବି ନାଇଁ ।

ବାପା : ସେଇଆତ କହିବୁ ଏତେ ଗେହ୍ଲେଇ ହେଉଛୁ କାହିଁକି ? ସବୁବେଳେ ତୋର କଣ ନା କଣ ବରାଦ ଥିବ । ହଉ ଆଣିବି ।

ରୂପା : (ବାହାରକୁ ଚହିଁ) ବା ଲୋ ବସି ବସି କ'ଣ ଲୁଗା ବୁଣୁଛୁ ସେଠି କଣ କଳ ଲୁଗା ବୁଣିଲାଣି ତୋ ଲୁଗା ଆଉ କିଏ କିଣିବ ?

ବାପା : କୋଉଠି କୋଉଠି ?

ରୂପା : ହେଇ ସେଇଠି ।

(ଲୁଗାବୁଣା ମେସିନ୍ ଚଲିଛି) ଅଭିନେତା ମାନଙ୍କ ଦ୍ୱାରା ଲୁଗାକଳର ଦୃଶ୍ୟ)

ବାପା : ହେ ପ୍ରଭୁ ! ଆମ ଦାନା ପାଣି ଏଥର ମଲା । ଆମେ ବଞ୍ଚିବା କେମିତି ପ୍ରଭୁ ? (ଲୁଗା କଳର ଦୃଶ୍ୟ ଦେଖାଯିବ)

ଶ୍ରମିକ ୧ : (ବିଡିଖାଇ ଗୀତ ବୋଲି ବୋଲି ପ୍ରବେଶ କଲା) ହଇରେ ବାସନ୍ତି !

୨ୟ : ହଇହେ ମୋ ନା କ'ଣ ବାସନ୍ତୀ, ମୋ ନା ବସନ୍ତ ।

୧ମ : ଦିନରେ ସିନା ବସନ୍ତ, ରାତିରେ ବାସନ୍ତି ।

୨ୟ : କେତେ ଛତରା ହଉଛୁ କିରେ,

୧ମ : ହଇରେ ତୁ କାହିଁକି ସେ ନଈକୂଳେ ସେ ଟୋକା ସାଙ୍ଗରେ ବସିଥିଲୁ

୨ୟ : ତୁ ବାଡିପଡା କେତେ ମିଛ କହୁଛୁ କିରେ...

(ୟାଙ୍କର କଥାବାର୍ତ୍ତା ବେଳେ ସୁପରଭାଇଜର ପ୍ରବେଶ)

୧ମ : (ବିଡି ପକାଇ) ବାବୁ ଜୁହାର

ସୁ.ଭାଇଜର : ଜୁହାର ଜୁହାର (ଖଣ୍ଡିଆ ବିଡିକୁ ଉଠାଇ ଦେଖୁଛି) ଏଇଟା କ'ଣ କିରେ..

୧ମ : ଆଜ୍ଞା ଏଇଟା ଶୁଖିଲା ଗେଣ୍ଡୁ ପତର ।

ସୁ. : ହଇରେ ଏଇଟା ଗେଣ୍ଡୁ ପତର ଶଳା ଏଠି ସୂତା ମିଲରେ ବସି ବିଡି ଟାଣି ମୋ କପାଳ ପୋଡିଦେବ ନା କ'ଣ ? ବାହାର ଏଠୁ ସବୁ.. ।

୧ମ : ନାଇଁ ଆଜ୍ଞା ମୁଁ ଆପଣଙ୍କ ଗୋଡତଳେ ପଡୁଛି ମୋ ପିଲା ଛୁଆ ମରିଯିବେ ଆଜ୍ଞା ।

୨ୟ : ମୁଁ ମନା କରୁଛି ବିଡି ଟାଣେନା । ସାର୍‌ଙ୍କ ମୁଣ୍ଡ ଟାଲ ଅଛି କ'ଣ ନା କ'ଣ କରି ପକେଇବେ ।

ସୁ.ଭାଇଜର : (ଶ୍ରମିକମାନଙ୍କୁ) ଏ ! କାମ କରୁଛନା ଘୁମଉଛ ବେ -

ଶ୍ରମିକ : ନାଇ ଅଜ୍ଞା କାମ ଚାଲିଛି ।

ସୁ.ଭାଇଜର : ତୁମଦ୍ୱାରା କାମ ନୁହେଁ ମତେ ଅନ୍ୟ ପନ୍ଥା ଦେଖିବାକୁ ପଡିବ (ପ୍ରସ୍ଥାନ) (Robort.) (ତିଆରି କରିଆଣିଛି ।)

ଶ୍ରମିକ : ଆଜ୍ଞା ଏ କ'ଣ ?

ସୁ.ଭାଇଜର : Robort ଯନ୍ତ୍ରମାନବ । ତୁମ ଜାଗାରେ ସେ କାମ କରିବ । ତୁମର ଏଥର ଛୁଟି ।

ଶ୍ରମିକ : ଛୁଆ ପିଲା ମରିଯିବେ ଆଜ୍ଞା....

ସୁ.ଭାଇଜର : ଯାଓ ଭାଗୋ... (ଶ୍ରମିକମାନଙ୍କୁ ବାହାର କରି ଦେଇଛି) (Robort କାମ କରୁଛି) ଏହାକୁ ନିଜସ୍ୱ କାମରେ ମଧ୍ୟ ଲଗାଯାଇପାରେ... (ସୁଇଚ ଚିପିବା ମାତ୍ରେ Robort ଆସି ସୁପରଭାଇଜର ମୁଣ୍ଡ ହାତ ଚିପି ଦେଇଛି ଓ ଗଳାଚିପି ମାରିଦେଇଛି ଓ କ୍ରମେ Siron ବାଜି ଉଠିଛି Aeroplane ଆକ୍ରମଣରେ ପରେ ବୋମା ପଡିବାର ଶବ୍ଦ ଓ ମେସିନ ଆଦି ଭାଙ୍ଗି ଧ୍ୱଂସ ହୋଇ ଯାଇଛି ସମସ୍ତେ ଭୂଇଁରେ ପଡିଛନ୍ତି । ସୂତ୍ରଧର ପ୍ରବେଶ ।)

ସୂତ୍ରଧର : ଆଜ୍ଞା ଦେଖୁଛନ୍ତି ତ ? ଆମ ଏଠି ଅତ୍ୟାଧୁନିକ ଯୁଗରେ, କମ୍ପ୍ୟୁଟର ଯୁଗରେ ମଣିଷ ହେଇଛି ବିବେକ ମନ ବିହୀନ ଯନ୍ତ୍ର ମାନବ । ଆଜ୍ଞା ଏଠି ମନର, ଆବେଗର ମୂଲ୍ୟ କିଛିନାହିଁ । ପିତାମାତା, ବନ୍ଧୁ ବାନ୍ଧବ ସବୁ ଅବାଞ୍ଛିତ ଶବ୍ଦ । ସବୁଠି କେବଳ ମୁଁ ଆଉ ମୁଁ ର ସ୍ୱାର୍ଥ । ଭଗବାନ ନ କରନ୍ତୁ ଯଦି ୩ୟ ବିଶ୍ୱଯୁଦ୍ଧ ଆରମ୍ଭ ହୁଏ ଭାବିଲେ ଦେଖି ତାହେଲେ କ'ଣ ହେବ । ପୃଥିବୀର ଧ୍ୱଂସ ନିଶ୍ଚିତ । ଆଉ ତା ପରେ ଆଗାମୀ କାଲିର ସଭ୍ୟତା କେମିତି ହେବ କେଜାଣି ? ସେଠି ମଣିଷ ମାନଙ୍କର ହୃଦୟରେ ସ୍ପନ୍ଦନ ଥିବ କି ନାହିଁ ଯଦିବା ସ୍ପନ୍ଦନ ଥିବ, ସ୍ନେହ, ପ୍ରେମ,

ଭକ୍ତି ଥିବ କି ନାହିଁ କେଜାଣି ସେକଥା କିଏ କାହିପାରିବ ? (ଦୁଇ ପଟରୁ ଦୁଇଟି ମଣିଷ କଙ୍କାଳ ନାଚି ନାଚି ପ୍ରବେଶ କଲେ ଏବଂ ସେମାନେ ଏକ ଷ୍ଟାଚୁରେ ଛିଡାହେଲେ । ଗୋଟିଏ କଙ୍କାଳ ଅନ୍ୟ କଙ୍କାଳକୁ ଫୁଲଟିଏ ଦେଲା ଯାହାର ରଙ୍ଗ ସବୁଜ ଆଉ ପତ୍ରର ରଙ୍ଗ ନାଲି ।)

ସୂତ୍ରଧର : ଆଗାମି କାଲିର ସଭ୍ୟତା ଆଉ ଏମିତି ହେବନି ତ ? (ଦେଖାଗଲା ଭୂଇଁରେ ପଡିଥିବା ଅଭିନେତା ମାନେ ସାପପରି ଘୁଷୁଡି ଘୁଷୁଡି ଛିଡା ହୋଇଥିବା ଦୁଇଟି କଙ୍କାଳ ଆଡକୁ ଆଗେଇଗଲେ ଓ ତାଙ୍କ ଉପରେ ଚଢି ଯାଉ ଯାଉ ସ୍ଥିର ହୋଇଗଲେ ।)

ସମସ୍ତେ : ଓଁ ସର୍ବେ ଭବନ୍ତୁ ସୁଖନଃ
ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।
(ଓମ୍ କରି ଆସି ସମସ୍ତେ ଦର୍ଶକଙ୍କ ସାମ୍ନାରେ ନମସ୍କାର କରୁଛନ୍ତି)

(ଶ୍ଳୋକ ଗାଇ ଗାଇ ମଞ୍ଚରେ ପ୍ରବେଶ କଲେ ଓ ଦର୍ଶକଙ୍କ ଆଡକୁ ଅର୍ଦ୍ଧଚନ୍ଦ୍ରାକାରରେ ଠିଆ ହୋଇ ଶ୍ଳୋକ ଶେଷରେ ପ୍ରଣାମ କରି ଛିଡାହେଲେ)

-ଯବନିକା-





**ନବୀନ କୁମାର ପରିଡ଼ା**

ଜନ୍ମ -୦୮-ମାର୍ଚ୍ଚ-୧୯୫୪, ପିତା: ⁄ ହରିଶ୍ଚନ୍ଦ୍ର ପରିଡ଼ା, ମାତା: ⁄ ବିଷ୍ଣୁପ୍ରିୟା ପରିଡ଼ା, ସ୍ଥାନ- ଜମାଳପୁର, ଜଳେଶ୍ୱର, ବାଲେଶ୍ୱର।

ଲେଖକ ବିଶ୍ୱନାଥ ଏକାଡ଼େମୀ ଜମାଳପୁରରୁ ମାଟ୍ରିକ ଶିକ୍ଷା ସମାପ୍ତ କରି ପରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ, କଲିକତାରୁ ନାଟକରେ ସ୍ନାତୋକତ୍ତର ଡିଗ୍ରୀ ହାସଲ କରି ଉତ୍କଳ ସଂଗୀତ ମହାବିଦ୍ୟାଳୟର ନାଟକ ବିଭାଗରେ ୧୯୮୩ ମସିହାରେ ନାଟକ ବିଭାଗର ଅଧାପକ ଭାବେ ଯୋଗଦାନ କରି ସଫଳତାର ସହିତ ନାଟ୍ୟକଳାରେ ଅଧାପନା ଦାୟିତ୍ୱ ନିର୍ବାହ କରି ପରେ ନାଟକ ବିଭାଗର ମୁଖ୍ୟ ଭାବେ ଓ ଉତ୍କଳ ସଂଗୀତ ମହାବିଦ୍ୟାଳୟର ଅଧକ୍ଷ ଭାବେ କାର୍ଯ୍ୟକରି ୨୦୧୨ ରେ ଅବସର ଗ୍ରହଣ କରିଛନ୍ତି। ନାଟ୍ୟରଚନା ବ୍ୟତୀତ, ନାଟ୍ୟପୁସ୍ତକ ରଚନା, ନିର୍ଦ୍ଦେଶନା, ଅଭିନୟ ଏବଂ ନାଟ୍ୟକର୍ମଶାଳା ଆୟୋଜନ କରିବାରେ ସେ ସିଦ୍ଧହସ୍ତ। ତାଙ୍କର ଅଦ୍ୟାବଧି ଲିଖିତ ପୁସ୍ତକ ଗୁଡ଼ିକ ହେଲା-୧- ନାଟ୍ୟ କଥା, ୨- ମଞ୍ଚସଜ୍ଜା ଓ ଆଲୋକ ବିନ୍ୟାସ , ୩- ବିଦ୍ୟାଳୟ ନାଟ୍ୟଶିକ୍ଷା ଓ ନାଟ୍ୟତ୍ରୟୀ

**ପ୍ରକାଶ ଅପେକ୍ଷାରେ - ନାଟକ :**

୧- ନାଟୁଆ, ୨- ଶଙ୍କରା, ୩- ଆବର୍ତ୍ତନ, ୪- ପ୍ରତିବିମ୍ବ, ୫- ଚିହ୍ନା ପୃଥିବୀ ଅଚିହ୍ନା ଘର ଇତ୍ୟାଦି ।

**ଯୋଗାଯୋଗ ଠିକଣା :** ବି- ୬/୧୦
ଇନ୍ଦିରାଗାନ୍ଧୀ ହାଉସିଂ କଲୋନି
ପୋ: ଶିଶୁପାଳ ଗଡ଼, ଭୁବନେଶ୍ୱର - ୭୫୧୦୦୨
ଟେଲିଫୋନ୍ - ୯୪୩୭୪୬୮୭୮୦

**ପ୍ରଚ୍ଛଦ: ଅନୁପ କୁମାର**